ରାଜାବଗିଚ୍ଚ, କଟକ
୨୯ । ୯ । ୬୩

ଭାଇ କାଳିନ୍ଦ,

ଯେଉଁମାନେ ସ୍କୁଲ କଲେଜରେ ପଢ଼ୁଥିବାବେଳେ କଲମ ଧରନ୍ତି, ପର ଜୀବନରେ ଯେତେବେଳେ ସେମାନଙ୍କୁ ଦୁନିଆ ସଙ୍ଗେ ଲଢ଼ିବାକୁ ପଡ଼େ, ହାତରୁ ଆପେ ଆପେ କଲମ ଖସିପଡ଼େ ।

ମୋ ଦେଶରେ ସାହିତ୍ୟ ସେବା କରି କେହି କେବେ ବଡ଼ଲୋକ ହୋଇନାହିଁ । ସାହିତ୍ୟକୁ ପେଶା କରି କଷ୍ଟେମଷ୍ଟେ ମୁଠାଏ ଖାଇବାର ଯୋଗାଡ଼ କରିବା ମଧ୍ୟ ଅସମ୍ଭବ । ତେଣୁ, ମୋ ଦେଶରେ ଲେଖକମାନଙ୍କର ସାହିତ୍ୟଜୀବନର ଅକାଳ ମରଣ ହୁଏ ।

ଯେଉଁମାନେ ମାଡ଼ି ଚକଟି ଆଗକୁ ଚାଲିବାକୁ ଚେଷ୍ଟା କରନ୍ତି, ସେମାନଙ୍କର ଅବସ୍ଥା ହୁଏ କଅଣ ? ଯେ ଟିକିଏ ଆଗେଇ ଯାଇଥାନ୍ତି, ତାଙ୍କର ନାଲି ଆଖି ଦେଖି, କୁତ୍ସାରଟନା ଶୁଣି ଟୋକା ଲେଖକ ଫେରେ । ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ଆଗୁଆମାନେ ରାଜନୀତି ଦେଖନ୍ତି, ଜାତିଭେଦ ଦେଖନ୍ତି । ଯେଉଁବିକଳରେ ଟୋକା ଲେଖକ ଗୁଡ଼େ କଲମ ।

ଭାଇ ରେ, ଯେ ତଥାପି ଆଗେଇ ଚାଲେ, ବହି ଲେଖେ, ପୋଷ ପୋଷ ଥାଳ ନଗାଡ଼ିଦିଏ ଦେହରୁ, ତାଆର ଅବସ୍ଥା ହୁଏ କଅଣ ? ତାଆର ପାଣ୍ଡୁଲିପି ପଡ଼େ ସେଇ । ଛପା ହେଲା ନାହିଁ । ନିଜେ ମଧ୍ୟ ଛପାଇ ପାରୁନାହିଁ ଅଭାବରୁ । ଲଭ କଥା ପଚାରେ କିଏ ? କାଗଜ ଖାଏ ପୋକ । ଆଖିରୁ ଲୁହ ନଗାଡ଼ି, ଟୋକା ଲେଖକ ଗୁଡ଼େ କଲମ ।

ଆସିଲେ ଜଣକେତେ ବହିଛପାଳୀ । ଆହା, ଲହୁଲୁହ ଯେଉଁ ଲେଖକ ଢାଳିଦେଇଛି ତା'ର ଲେଖାରେ, କେତେ ରାତି ଖାଇନାହିଁ, କେତେ ରାତି ଶୋଇନାହିଁ, ପାଣ୍ଡୁଲିପିଟି ବହି ଆକାରରେ ଦେଖିବାକୁ

ପ୍ରାଣ ତାର ଛଟପଟ ହେଉଛି । ପ୍ରକାଶକଙ୍କୁ ନେହୁରା ହୋଇ ଶେଷରେ ଶୁଣେ, ଲେଖାଟି ମନ୍ଦ ନୁହେଁ, ତେବେ ବଜାରରେ ବିକ୍ରିହେବ ନାହିଁ । ମନ ମାରି ଫେରେ ବିଚରା ଲେଖକ । ପାଣ୍ଡୁଲିପି ଅଳିଆ ଗଦାରେ ରହେ, କଲମ ଗୁଡ଼େ ।

ଆଉ କେତେ ସାହିତ୍ୟ-ପ୍ରକାଶନ ବାହାରିଲେ ଅଣ୍ଟା ଭିଡ଼ି । ଛପିଲେ ଖଣ୍ଡକେତେ ଉପନ୍ୟାସ । ନାଆଁର ପ୍ରସାର ହେଲା । ଆଖିରେ ଦିଶିଲା ଟଙ୍କା । ବ୍ୟବସାୟର ଫନ୍ଦ ଖେଳିଲା ମନରେ । ଦୁଃଖର ସାଥୀ ଥିଲେ ଯେଉଁ ଲେଖକମାନେ, ସେମାନଙ୍କୁ ଠେଲିଦେଲେ ଦୂରକୁ । ହତାଶ ହୋଇ ଲେଖକ ଗୁଡ଼ାଇଲା କଲମ ।

ଏମିତି ତ କେତେ କଥାରେ ଭାଇ, ଅନେକ କହୁଥିଲ ତୁମେ, ଅନେକ କହୁଥିଲି ମୁଁ, ଆଉ ମୋର ଅନ୍ୟ ଲେଖକ ଭାଇମାନେ । ମୋ ଦେଶ ଗରିବ, ମୋ ଦେଶ ଅଶିକ୍ଷିତ, ମୋ ଦେଶରେ ବଢ଼ି ମାଡ଼େ, ତୋଫାନ ଉଠେ, ମରୁଡ଼ି ପଡ଼େ । ମୋ ଦେଶରେ ସାପ କାମୁଡ଼େ, ବାଘ ଘୋଷାରେ, ମେଲେରିଆ, ହଇଜା, ବସନ୍ତ ମାଡନ୍ତି, ନଅଙ୍କ ପଡ଼େ, ଲୋକେ ଖାଇବାକୁ ପାଆନ୍ତି ନାହିଁ । ମୋ ଦେଶରେ ଲୋକେ ଲଙ୍ଗଳା ହୋଇ ଜଙ୍ଗଲରେ ବୁଲନ୍ତି । ମୋ ଦେଶ ଗୋଡ଼ର ଦେଶ, ବେଠିଆର ଦେଶ । ପରଘରର ଜମିଦାରର ପରଜା ମୋ ଭାଇମାନେ । ପରଦେଶରେ ମୋ ଭାଇ କୁଲିଗିରି କରେ, ମୋଟ ବୁହେ, ମାଡ଼ ସହେ । ମୋ ଦେଶର ହାତଗୋଡ଼ ନାହିଁ । ସାହିତ୍ୟ ଉଧାଇବ କିପରି ? ଲେଖକ ଗୁଡେ କଲମ ।

ମୋ ଦେଶରେ ଗୋଡ଼ ପଲର ଲହୁରେ ମହାଜନର ରାଜ୍ୟ ବଢ଼େ, ବେଠିଆର ଲୁହରେ ବୋଇତ ଚଲେ । ମୋ ଦେଶର ଝାଳରେ ବିଦେଶରେ କଳକାରଖାନା ଗଢ଼ାହୁଏ । ପ୍ରଜାତନ୍ତ୍ରର ଆହାରରେ କେତେ କୋଠାରେ ବଜୁଳିବତୀ ଜଳେ, ଆଉ ମୋ ଭାଇର କଲମକାଳିରେ କେତେ ପ୍ରକାଶକଙ୍କର କୋଠାର ମୁଣ୍ଡ ଛୁଏଁ ଆକାଶକୁ । ପ୍ରକାଶନ ଗୃହେ ଚଳନ୍ତି, ଧୀରେ ଧୀରେ ଆଖିଆଗରୁ ଲେଖକ ହୁଏ ଅଦୃଶ୍ୟ । ଲେଖକ ହୁଏ ଗୁହଆ, ଗୁଡ଼େ କଲମ ।

ଘୁଇ କାଳିନ୍ଦ, ତୁମେ ଏ କଥା ବୁଝିଥିଲ । ଅଭିମାନ ବଶ କହୁଥିଲ ଯେବେ, ଓଡ଼ିଆରେ ଲେଖିବା ନାହିଁକି ? ତୁମେ ବୁଝିବ ଲେଖକର ଦୁଃଖ । ତୁମେହିଁ ଅନୁଭବ କରିବ, ତା'ର ଗୋଟିଏ ଧାଡ଼ି ଲେଖାରେ ସେ କେତେ ଲୁହଲହୁ ଅଜାଡ଼ିଦେଇଛୁ । ଭଲମନ୍ଦ ଲେଖକ ବୁଝେ ନାହିଁ । ଭଲମନ୍ଦ କହେ ପାଠକ, ହୁଏତ ବୁଝେ ସେହି । ଲେଖକ ଲେଖେ, ଲେଖେ—

ତୁମେ ମୋ'ଓର ପର ଗଣିବ । ଦୁନିଆର କେତେ ଦୁଃଖନଞ୍ଜାଳ ମୁଣ୍ଡରେ ବୋହି କଲମ ଧରିଛି । ତୁମେ ମୋର ନମସ୍ୟ । ମୋର ଏଇ **'ଅଦେଖା ହାଣ୍ଡି'** ତୁମର ହାତରେ ଦେଲି । କେତେ ଆଦରରେ, କେତେ ଯତ୍ନରେ **'ଗୀତା'** ଟିକୁ ସବୁ ସ୍ନେହ ଦେଇ ବଢ଼ାଇଛି । ଅସୁନ୍ଦର ଝିଅ ପଛେ, ଯେତେ ଅବଗୁଣ ଥାଉ, ତାକୁ ତୁମେ ଆଦର କରିବ, ଏଇ ମୋର ଆଶା ।

କାହ୍ନୁଚରଣ

# କାହ୍ନୁଚରଣଙ୍କ ପୁସ୍ତକାବଳୀ

| ପୁସ୍ତକର ନାମ | ରଚନା | ପ୍ରଥମ ପ୍ରକାଶ |
|---|---|---|
| ଉତ୍ସବେ ବ୍ୟସନ | ୧୯୨୩-୨୪ | ପାଣ୍ଡୁଲିପି ହଜିଲା |
| ତଥାସ୍ତୁ | ୧୯୨୪-୨୬ | ୧୯୬୩ |
| ବାଲିରାଜା | ୧୯୨୬-୨୮ | ୧୯୩୧-୩୨ |
| ଅରୁଣା | ୧୯୨୮-୨୯ | ପାଣ୍ଡୁଲିପି ହଜିଲା |
| ଶଲାତକ | ୧୯୨୯-୩୦ | ୧୯୩୦ |
| ନିଷ୍କୃତି | ୧୯୩୦-୩୧ | ୧୯୩୨ |
| ମାନସୀ (କାବ୍ୟ) | ୧୯୩୧ | ୧୯୩୨ |
| ସ୍ୱପ୍ନ ନା ସତ୍ୟ | ୧୯୩୨ | ୧୯୩୩ |
| ଦୁନିଆର ଦାଉ | ୧୯୩୨-୩୩ | ୧୯୩୪ |
| ହା-ଅନ୍ନ | ୧୯୩୩-୩୪ | ୧୯୩୫ |
| ଓଲଟ ପାଲଟ | ୧୯୩୪ | ୧୯୩୬ |
| ପରକୀୟା | ୧୯୩୪-୩୬ | ୧୯୩୮ |
| ପରିଚୟ | ୧୯୩୪ | ପାଣ୍ଡୁଲିପି ହଜିଲା |
| ଉଦ୍ଦଣ୍ଡୀ | ୧୯୩୮ | ୧୯୩୯ |
| ଅଦେଖା ହାତ | ୧୯୩୯-୪୦ | ୧୯୪୩ |
| ପ୍ରତୀକ୍ଷା | ୧୯୪୧ | ୧୯୪୩ |
| ଭଲ ପାଇବାର ଶେଷ କଥା | ୧୯୪୨ | ୧୯୪୪ |
| ଭୁଣ୍ଡ ବାଇଦ | ୧୯୪୨-୪୩ | ୧୯୪୪ |
| ଏପାରିସେପାରି | ୧୯୪୪ | ୧୯୪୬ |
| ଶାସ୍ତି | ୧୯୪୫ | ୧୯୪୬ |
| ବନଗହନର ତଳେ | ୧୯୪୫ | ୧୯୪୭ |
| ଅନ୍ତଗୟ | ୧୯୪୬ | ୧୯୪୮ |
| ଶ୍ରେୟ ଗୃହାଣି | ୧୯୪୬ | ୧୯୪୭ |

| ପୁସ୍ତକର ନାମ | ରଚନା | ପ୍ରଥମ ପ୍ରକାଶ |
| --- | --- | --- |
| ଅଭିନେତ୍ରୀ | ୧୯୪୬ | ୧୯୪୭ |
| ଭୁଲି ହୁଏନା | ୧୯୪୭ | ୧୯୪୮ |
| ଝଞ୍ଜା | ୧୯୪୮-୪୯ | ୧୯୫୦ |
| ମିଳନର ଛନ୍ଦ | ୧୯୪୯ | ୧୯୫୧ |
| ଶବଂଷ୍ଟ | ୧୯୫୦-୫୧ | ୧୯୫୨ |
| ଘଷ୍ଟ | ୧୯୫୨-୫୩ | ୧୯୫୪ |
| କା | ୧୯୫୩-୫୪ | ୧୯୫୬ |
| (୧୯୫୯ରେ ଘଷ୍ଟ୍ରପତି ପୁରସ୍କାର ପ୍ରାପ୍ତ) | | |
| ବଜ୍ରବାହୁ | ୧୯୫୫-୫୬ | ୧୯୫୯ |
| ଢେଉଢେଉକା | ୧୯୬୦-୬୧ | ୧୯୬୨ |
| ବଗ ବଗୁଲୀ | ୧୯୬୨-୬୩ | ୧୯୬୪ |
| ଇତିହ | ୧୯୬୩-୬୪ | ୧୯୬୬ |
| ତମସା ତୀରେ | ୧୯୬୪-୬୬ | ୧୯୬୭ |
| ମୁଁ ମନ୍ତ୍ର ଜାଣେ | ୧୯୬୭ | ୧୯୬୮ |
| ଛୁଟିଲେ ଘଟ | ୧୯୬୭-୬୮ | ୧୯୬୮ |
| ସ୍ୱପ୍ନା | ୧୯୬୭-୬୮ | ୧୯୬୮ |
| ତରଙ୍ଗର ତଳେ | ୧୯୬୮ | ୧୯୬୯ |
| ମନଜାଣେପାପ | ୧୯୬୮-୬୯ | ୧୯୬୯ |
| ମନ ମନ୍ଥନ | ୧୯୬୯ | ୧୯୭୦ |
| ଅଷ୍ଟଗୋପମାସ୍ତ | ୧୯୬୯-୭୦ | ୧୯୭୦ |
| ଅଙ୍ଗନା | ୧୯୭୦ | ୧୯୭୧ |
| ମମତାରମାୟା | ୧୯୭୧ | ୧୯୭୨ |
| କହିବାକୁ ଲଜ | ୧୯୭୦-୭୧ | ୧୯୭୩ |
| ନିର୍ବିଶଙ୍କ | ୧୯୭୧-୭୨ | ୧୯୭୩ |

ଶୁଭ କାଉଟିଏ ମାଈପଞ୍ଜିବେଳେ ଆମର ନୁଆଁଣିଆ ଚାଳ ଉପରେ କା କା ଡାକୁଥିଲା । ଘର ଆଗ ମାଟିପିଣ୍ଡା ଉପରେ ବସି ଜଙ୍ଘ ଉପରକୁ ଲୁଗା ଟେକି ଏକ ମନରେ ସଞ୍ଜ ବଳୁଥିଲି । ବାଡ଼ିଆଡ଼ କୂଅରୁ ମାଠିଆଏ ପାଣି ନେଇ ବୋଉ ଆସି ଦୁଆର ମଝିରେ ଠିଆ ହେଲା । ଥରେ ମୋ ଆଡ଼କୁ ଓ ଥରେ କାଉଟି ଆଡ଼କୁ କଣେଇଁ ଚାହିଁଲା । ପାଣିମାଠିଆ ରୋଷଘରେ ରଖିଦେଇ ଆସି କାଉକୁ ଲକ୍ଷ୍ୟ କରି କହିଲା, ଶୁଭ କାଉ ରେ, ଉଡ଼ି ଯା, ଚାଲି ଯା, କିଏ ଆସୁଛି ?

କାଉଟି ଉଡ଼ିଗଲା ଡେଙ୍ଗା ନଡ଼ିଆ ଗଛ ଉପରକୁ ।

ବୋଉ କହିଲା, ଆରେ ଗୀତା, ତୋ ବାପା ଆସୁଛନ୍ତି ପରା । ଦେଖୁନୁ, କାଉ କଟକ ମୁହାଁ ହୋଇ ଉଡ଼ିଗଲା । ବୋଉ ଗଲା ଚୂଲିରୁ କାଠ ଆଣିବାକୁ ।

ଭାବିଲି, ସତେ ବାପା ଆସୁଚନ୍ତି ? ଯଦି ଆସୁଥାନ୍ତି ସେହି ତ ଆସୁଥିବେ । ତାଙ୍କ ଛଡ଼ା ଆଉ ଆମର ଆପଣାର କିଏ ଅଛି ? ମାତୃକୁଳରେ କେହି ନାହାନ୍ତି । ଗରିବ ଘର ବୋଲି ଟିକିଏ ବେଶି ବୟସରେ ବାପା କୋଡ଼ିଏ ଟଙ୍କା ଦେଇ ବୋଉକୁ ବାହା ହୋଇଥିଲେ । ତାଙ୍କୁ ସେତେବେଳେ ଚାଳିଶି ବର୍ଷ, ବୋଉ ଚଉଦ ବର୍ଷର ଝିଅ । ବାହାଘରର ଦି'ଚାରି ବର୍ଷ ପରେ ମାମୁଁ ମାଇଁ ଉକାଉକି ହୋଇ ଦିନ ଚାରିଠାରେ ଚାଲିଗଲେ । ବୁଢ଼ୀ

ମାଆଟି ବଞ୍ଚି ରହିଥିଲା । ମୋ ଜନ୍ମର ଦଶବର୍ଷ ପରେ ସେ ମଧ୍ୟ ଗୁଲିଗଲା ।

ମୋର ଜଣେ ଦାଦି ଥିଲେ । ପିଲିଦିନୁ ତାଙ୍କର ସ୍ୱଭାବ ଉଦାସିଆ । ଭେଣ୍ଡା ବୟସରେ ଘର ଛାଡ଼ି ଗୁଲିଯାଇଥିଲେ । କିଏ କହେ, ସେ କୁମ୍ଭିପଟିଆ ବାବାଜି ହୋଇ ଦେଶ ଦେଶ ବୁଲୁଚନ୍ତି; ଆଉ କେହି କହନ୍ତି, ସେ ବାରମ୍ବାର ଚୋରି କରି ଜେଲଖାନାକୁ ଘର କରିଥାଆନ୍ତି । ଯାହା ହେଉ, ସେ ତ ମୋ ଜନ୍ମ ଆଗର କଥା । ବୋଉ ତାଙ୍କୁ ବର୍ଷ ଦି ତିନଥର ଦେଖିଥିବ । ତାଙ୍କର ଥିବା ନ ଥିବା ଆମ ପକ୍ଷରେ ସମାନ ।

ଅଦିନରେ ବାପା ଆସିବେ ବା କିପରି ? କଟକରେ ରାଣୀହାଟ ଅପର ପ୍ରାଇମେରୀ ସ୍କୁଲରେ ମାଷ୍ଟରୀ କାମ କରନ୍ତି । ମାସକୁ ଦଶଟି ଟଙ୍କା ବେତନ । ସେଇଥିରୁ ତିନି ଗୁରି ଟଙ୍କାରେ କଷ୍ଟେମଷ୍ଟେ ଚଳି, ବାକି ଟଙ୍କା ଘରକୁ ପଠାନ୍ତି । ପହିଲି ଯିବାର ଦିନ ସାତଟା ଯାଇନାହିଁ । ସେଦିନ ଟଙ୍କା ଆସି ପହଞ୍ଚିଛି । ନଅକୋଶ ବାଟ କଟକ । ବିଶେଷ ଦରକାର ଥିଲେ ଶନିବାର ଦିନ ଆସି ରାତି ଦି ଘଡ଼ିକୁ ଗାଁରେ ପହଞ୍ଚି ପୁଣି ସୋମବାର ଦିନ ରାତି ପାହାନ୍ତାରୁ ଉଠି କଟକ ଯାଆନ୍ତି । ନୋହିଲେ ଦିନକିଆ ଛୁଟିରେ ଘରକୁ ଆସିବା ଅସମ୍ଭବ ।

ସଞ୍ଜ ବେଳା ଶେଷ ହେଲା । ନଡ଼ିଆ ଗଛ ଉପରକୁ ଗୁହିଁଲି । କାଉ କେତେବେଳୁ ଉଡିଗଲାଣି । ମତେ ହସ ମାଡ଼ିଲା । ଯେଉଁଦିନ ଯେତେବେଳେ କାଉଟିଏ ଆସି ବୋବାଏ, ବୋଉ କହେ, ବାପା ଆସୁଛନ୍ତି ।

ବୋଉ ଚୁଲିରୁ କାଠ ଆଣି ଗୋଷଘରେ ରଖି କହିଲା, ଗୀତା, ନଗି ଖଣ୍ଡି ନେଇ ଯା, ସଜନା ଗଛରୁ ଗଣ୍ଡାଏ ଛଅଟା ଛୁଇଁ

ପାରିଆଣିବୁ । ସଞ୍ଜବଳକା ଦୁଆରବନ୍ଧ ଉପରେ କରେଇକରି ରଖିଦେଇ ଯା ।

କାଉ କଥା ମନରୁ ଯାଇ ନ ଥାଏ । ହସ ହସ ହୋଇ କହିଲି, ବୋଉ ଲୋ, ଆଜ ବୁଧବାରଟାରେ ବାପା ଆସିବେ କେମିତି ? ଦାଦା ଆସୁଛନ୍ତି କ କଅଣ !

ସେଷଘର ଭିତରେ ଥାଇ ବୋଉ ହସିଉଠିଲା । କହିଲା, ହଁ ହଁ, ତତେ ଦେଖିବାକୁ ଆସୁଥିବେ । ପେଟରେ ଥିଲୁ , ସେ ଘର ଛୁଡ଼ି ଯାଇଛନ୍ତି । ହେଲେ, ମୋ ପାଖରେ ଆଉ ଗହଣାଗାଣ୍ଠି କିଛି ନାହିଁ ।

—ଦୁଇ—

ନଗି ଧରି ସଜନାମୂଳକୁ ଗଲି । ନଈବନ୍ଧକୁ ଲାଗି ଆମର ଛଳ ବାରିଟି । ବନ୍ଧପଟକୁ ନଧଞ୍ଚ ବେତ ବାଇଗବା ବାଡ଼ । ବାଡ଼ ମଝିରେ ଠାଏ ଠାଏ ଫାଙ୍କ । ଲୋକବାକ କ ଗୋରୁଗାଈ କେହି ବାରି ଭିତରକୁ ପଶିପାରନ୍ତି ନାହିଁ । ନଈକି ଚାହିଁଲେ ବନ୍ଧ ଉପରେ ଯା ଆସ କରୁଥିବା ଲୋକ ଦେଖାଯାଆନ୍ତି । ଦୂରକୁ ଚାହିଁଲେ ନଈ-କଣ୍ଢିଆ, ନଈପଠା, ତା ଆର ପାଖେ ଧୂସର ବାଲି, ଶେଷରେ ପାଣିଗାରଟିଏ ଦେଖାଯାଏ ।

ଛଳ ବାରିକୁ ପଶି ଯାଉଁ ଯାଉଁ ଆଗ କୂଅ । ଗୃହ୍ନି କରକୁ ଦଉଡି ନଡ଼ିଆ ଗଛ । ଗୃରି ପାଞ୍ଚ ବର୍ଷ ହେବ ଫଳୁଛି । ସେ ପାଖକୁ ବୁଢ଼ା ସଜନା ଗଛ, ଗ୍ରେଟ ପିଜୁଳି ଗଛ । ବାରି ମଝିରେ ଗୋଟିଏ ଝଙ୍କା ବଉଳ ଗଛ । ତା ପାଖକୁ ଯୋଡ଼ଡ଼ିଆ ଡେଙ୍ଗା ଚମ୍ପା ଗଛଟି ।

ଦି ପାଖେ କିଆବାଡ଼; ମଝିରେ ଗୋହିରି ବାଟ । ଦରକାର ହେଲେ ସେଇ ବାଟେ ବନ୍ଧ ଉପରକୁ, ନଈକୁ ଯା ଆସ କରୁଁ । ଆଗ ବାଟେ ଗାଁ ଦାଣ୍ଡ । ଗାଁ ଗୋହିରି ଦେଇ ଯିବା ଅସୁବିଧା । ଲୋକବାକ ଥାନ୍ତି । ବାଟ ବି ଠିକଏ ବୁଲଣିଆଁ । ବାପା କଟକରୁ ଆସିଲେ ବେଳେ ବେଳେ ଆସି ବାରିପଟେ ଘରେ ପଶନ୍ତି ।

ସଜନାମୂଳରେ ଠିଆ ହୋଇ ବାଡ଼ ଫାଙ୍କବାଟେ ବନ୍ଧ ଆଡ଼କୁ ଚାହିଁଲି, ଆଖି ଯେତେଦୂର ପାଇଲା । ସିଧା ବନ୍ଧଟା ଆର ଗାଁର ଗଛ ଗହଳ ଭିତରେ ବଙ୍କେଇ ଲୁଚି ଯିବାଯାଏ କେତେ ଲୋକ ଯା ଆସ କରୁଛନ୍ତି । ବାପାଙ୍କ ଚାଲି ପରି କାହାର ଚାଲି ଦିଶୁନାହିଁ । ବେଳେବେଳେ ସେ ସଞ୍ଜ ଆଗରୁ ଆସି ପହଞ୍ଚନ୍ତି ।

ମଗୁଶିର ମାସ । ସଞ୍ଜ ହେଉଁଣୁ ଦେହ ଶୀତେଇଲାଣି । ରାତି ପଡ଼ିଲେ କେତେ ଶୀତ ହେବ । ଯଦି ଆସିବାର ଥାନ୍ତା ସେ ରାତି-ଯାଏ ରହନ୍ତେ ନାହିଁ । ନା, ସେ ଆସିବେ ନାହିଁ । କାଉଟାଏ ସିନା ଉଡ଼ିଗଲା, ତା ସଙ୍ଗେ ଯିବା ଆସିବାର ସମ୍ବନ୍ଧ ନାହିଁ ।

ହତାଶ ହୋଇ ନଗି ଧରି ଛୁଇଁ ତୋଳିବାକୁ ଲାଗିଲି । ଡେଙ୍ଗା ଗଛ । ପାଖରେ ଯେତେ ଥିଲା ସବୁ ନିତିଦିନ ତୋଳି ତୋଳି ଶେଷ ହୋଇଛନ୍ତି । ନଗି ଟେକି, ମୁଣ୍ଡ ବଙ୍କାଇ, ଉପରକୁ ଚାହିଁ ତୋଳିବାକୁ ହେବ । ଦି ଚାରୋଟି ତୋଳି ବନ୍ଧଆଡ଼କୁ ଚାହିଁଲି । ଧୂସର ନଈର ଏ ପଟେ ହବୁଜ ଧୂଆଁ ପରି ପଠା । ତାକୁ ଲାଗି କଣ୍ଡିଆଟି ହଳଦିଆ ସୋରିଷ ଫୁଲରେ ଉଛୁଳି ଉଠୁଛି । ସଞ୍ଜବେଳର ଶିରିଶିରିଆ ପବନର ଦୋହଲି ଦୋହଲି ସୁନ୍ଦର ଦିଶୁଛି ।

ଘଡ଼ିଏ ଗୁହାଁରିଥିଲି । କାହାର ଖଣ୍ଡିକାଶ ଶୁଣି ମୋ ମନ ଫେରିଆସିଲା କେଉଁ ସପନପୁରୀର ଚନ୍ଦ୍ରାବାଇଜରୁ । ବନ୍ଧ ଉପରେ ମହନ ବଡ଼ବାପା ବାଡ଼ି ଠୁକୁ ଠୁକୁ କରି ଯାଉଛନ୍ତି । ପଛରେ ତାଙ୍କର ଆଉ କଏ ଦି ତିନି ଜଣ । ଜିଭ କାମୁଡ଼ି ବାଉ଼ କରି ଉହାଡ଼କୁ ଠିଆ ହେଲି । ଗୋଡ଼ ଦୁଇଟା ଭୟରେ ଥରୁଥାଏ ।

ବାପ୍ ରେ, ମହନ ଜେଠା ! ଗର୍ଭିଣୀ ଗାଈ ଉଦରରେ 'ବାଠ ଗୁଟେଉ଼ । ଆଖିରେ ପଡ଼ିଲେ ଆଉ ରକ୍ଷା ନାହିଁ । ଚଉଦ ପୁରୁଷ ଉଗାଳିବେ । କହିବେ, କି ଅଭବ୍ୟ କାଳ ହେଲା ହେ, ଝିଅ-ବୋହୂଗୁଡ଼ା ଘୋଡ଼ୀ ପରି ଫର ଫର ହେଉଛନ୍ତି; ମଣିଷ ମାନୁନାହାନ୍ତି ।

ମହନ ଜେଠାଙ୍କ ଗାଳିର ଜବାବ୍ ଦେବାକୁ ଆଖପାଖ ମାଈଖଣ୍ଡି ଗାଁରେ କେହି ପୁଅ ସାହସ କରନ୍ତି ନାହିଁ । ଏକେ ତ ସେ ବଡ଼ଲୋକ, କୁବେର ପରି ସମ୍ପତ୍ତି ମାଡ଼ିଯାଇଛି, ତହିଁରେ ପୁଣି ସମସ୍ତେ ତାଙ୍କର ଧାରୁଆ । କାହାର ସର୍ବନାଶ କରିବାକୁ ଇଚ୍ଛା ହେଲେ ଦିନ ପନ୍ଦରଟାରୁ ତାଙ୍କୁ ବେଶି ଲାଗେ ନାହିଁ ।

ମହନ ଜେଠା ଚାଲିଗଲେ । ପିଣ୍ଡରେ ମୋର ପ୍ରାଣ ପଶିଲା । ଯାହାହେଉ, ମୋତେ ସେ ଦେଖିନାହାନ୍ତି । ପୁଣି ସଜନାମୂଳକୁ ଫେରିଆସି ଛୁଇଁତୋଳାରେ ମନ ଦେଲି । ମୁଣ୍ଡ ଉପରୁ ଲୁଗାଟା ଖସିଗଲା । ଦେହର ପାଖେ ଫୁଙ୍ଗୁଳା ହୋଇପଡ଼ିଲା । ସେ ଦିଗକୁ ନିଘା ନଜର ନାହିଁ । ଯେଉଁ ଛୁଇଁ କେଣ୍ଡାକରେ ନଗି ଲଗାଇଥିଲି ତାକୁ ଧରି ଟାଣୁଛି । କଟେଣଇ କରି ଥରେ ଖଞ୍ଜାଆଡ଼କୁ ଗୁହାଁଳି, କାଳେ ଏଣେ ବୋଉ ଆସୁଥିବ । ଦେହମୁଣ୍ଡ ଫୁଙ୍ଗୁଳା ଦେଖିଲେ

ସେ ବରକୁ ହୋଇ ଆକଟି କହେ, ଲୁଗା ଟା ବେଢ଼େଇ ପିନ୍ଧୁନୁ କେ, ମୁଣ୍ଡ ଉପରକୁ ବେକ ଉପରକୁ ଟାଣି ଆଣୁନୁ ! ମାଇକନିଆ ଝିଅ—

ତା'ଆର ଡରରେ ଲୁଗାପଟା ନେଇ ବଡ଼ ସାବଧାନ ହୋଇ ଚଳେ । ଦେହରୁ ମୁଣ୍ଡରୁ କେଉଁଠୁ ଟିକିଏ ଲୁଗା ଖସିଗଲେ ବଡ଼ ଗୁଉଁଗୁଉଁଆ ଲାଗେ । ଆପେ ଆପେ ଆଖି ଦ'ଟା ବୁଲିଯାଏ ଗୁରୁଆଡ଼କୁ ଡରରେ । ହଁ, ଡରରେ । ହୁଏତ ଲାଜ ସଙ୍କୋଚ ବି ଟିକିଏ ମିଶିଥାଏ ତା ସାଥିରେ; କିନ୍ତୁ ଲାଜ ସଙ୍କୋଚର ତୀବ୍ର ତାଡନା ତ ଆଉ ନାହିଁ ମୋର । ସେ ବୟସ ଡେଇଁଆସିଛି ।

—ତିନି—

ନୂଆ ନୂଆ ଯେତେବେଳେ ତାରୁଣ୍ୟର କାଉଁରି ପରଶ ଲାଗି-ଆସୁଥାଏ,ଦେହରେ ମନରେ ପରିବର୍ତ୍ତନର ସୁନେଲି ବାଆ ଖେଳି-ଯାଉଥାଏ, ଲାଜ ସଙ୍କୋଚ ମନକୁ ଆପେ ଆପେ ଆସେ । ବେଳ ବୋହିଯାଏ । ମନର ସୁନେଲି ଭାବନାଟା ଜୁଆର ପରି ମାଡି ଆସିଲେ ବି ଦେହର ପରିବର୍ତ୍ତନରେ ଆଉ ନୂଆ ସରାଗ କି ଚମକ ସଙ୍କୋଚ ଆସେ ନାହିଁ । ବକ୍ଷ ଭେଦି ଯୌବନ ଉଠେ; କିନ୍ତୁ ଲକ୍ଷ-କୋଟି ନାରୀଙ୍କର ଗର୍ବ ବୋଲି ସଙ୍କୋଚ ରହିପାରେ ନାହିଁ ବେଶି ବେଳ । ଲାଜ ଆସେ ଛପି ଛପି, ଅଭ୍ୟାସଗତ ଲାଜ, ଯେଉଁଠି ପଡ଼େ ପୁରୁଷର ଗୁଇ । ପୁରୁଷ,ଯାହା ପାଇଁ ମନ କେମିତି ଛନ ଛନ ହୁଏ, ବାହୁନି ଉଠେ !

ଆଖିରେ କଅଣ ପଡିଲା । କଅଁଖୁଣ୍ଟା ଲାଗିଲା ପରି ଜଣାଗଲା । କାଗି ଗୁଡ଼ିଦେଇ ନେଡ଼ିରେ ଆଖି ମଳିବାକୁ ଲାଗିଲି ।

ଯୋକଟାଏ । କେତେବେଳକେ ଖସିଗଲି । ଲୁଗାପଟା ଝାଡ଼ି ଭଲ କରି ଦେହ ଉପରକୁ ଆଣିଲି । ନଇଁପଡ଼ି ସଜନା ଛୁଇଁ ଗୋଟାଉଛି, ଅତି ପାଖରେ କାହାର ଦୀର୍ଘଶ୍ୱାସର ଆଭାସ ପାଇଲି । ଦେଖିଲି, ପିଜୁଳି ଓ ନଡ଼ିଆ ଗଛ ଉହାଡ଼ରୁ ଧୋବ ଫର ଫର କାମିଜ ପିନ୍ଧି ହସି ହସି ବାମ ଭାଇ ମୋର ଆଡ଼କୁ ଆସୁଛନ୍ତି । ଲାଜ ସଙ୍କୋଚରେ ବିବ୍ରତ ହେଲି ନାହିଁ ତ, ବରଂ ରାଗରେ ଜଳିଗଲି ଗୋଟାପୁରା ।

କେଡ଼େ ଅଭଦ୍ର, କେଡ଼େ ବାଲଠା ! ନିଜର ଆତ୍ମସମ୍ମାନ ନାହିଁ ବୋଲି କଅଣ ମନେ କରନ୍ତି ଅନ୍ୟ କାହାର ନାହିଁ ? କଅଣ ବି ପଦ ଟାଣଟାଣ କହିଦେବି ଭାବିଲି । ମୁହଁ ଖୋଲି ହେଲି ନାହିଁ । ଅଷ୍ଟମରେ କେବେ ଟିକେ ଭୁଲ କରିଥିଲି । ତାଙ୍କର ସ୍ନେହ ଶରଧାରେ କଣିହୋଇ ଗାଁ ଆଈଙ୍କର ଥଟ୍ଟାଳିଆ କଥାକୁ ସତ ମଣି ବାମ ଭାଇ ହସି ହସି ପଚାରିଲାରୁ ନିରୋଳାରେ ଦିନେ ଭୁନ ଭୁନ କହିଦେଇଥିଲି, ହଁ ବାହା ହେବି ଯା । ଏଇ କଥା ଯେ କହନ୍ତି ନାହିଁ, ସ୍ତ୍ରୀ' ଭିତରେ ଯେ କଅଣ ଲାଜ ସରମ ଅଛି, ମୁଁ ଜାଣି ନ ଥିଲି । ସେହି ଭୁଲର ଭୂତଟା ଏଡ଼େ ଏଡ଼େ ଆଖି ଦେଖାଇ ମୋର ମୁହଁଟାକୁ ବନ୍ଦ କରିଦେଲା ।

ପାଖକୁ ଆସି ସେ ପଚାରିଲେ, କଅଣ କରୁଥିଲୁ ଗୀତା ?

ସାଙ୍ଗେ ସାଙ୍ଗେ କହିପକାଇଲି, ତେମେ କଅଣ ଅନ୍ଧ କି ?

ବାମ ଭାଇ କହିଲେ, ହଁ, ଅନ୍ଧ । ଆଜକାଲି ହୋଇଛି । ଦେଖୁନୁ, ଆଖିରେ ଚଷମା ଲଗାଇଲିଣି । କାହିଁକି ଜାଣୁ ?

ମୋର ଜାଣିବାର ଦରକାର ନାହିଁ । ତେମେ ଏଠୁ ଯିବଟି ।

ଏମିତି ଚିଡ଼ି ପକାଉଛୁ କାହିଁକି ? ଆଜକାଲି ତୁ ଭାରି ବଦଳି ଗଲୁଣି । ଯେତେବେଳେ ଦେଖା ହୁଏ, ଖାଲି ତୋର ସେଇ କଥା ।

—ଗ୍ୟଣ—

ଆଜକାଲ ! ଏଇ ଗୋଟିଏ ପଦର ଅର୍ଥ ଏକା ବୁଝନ୍ତି ଦାମ ଭାଇ, ଆଉ ବୁଝେ ମୁଁ । ଆଜକାଲର ପଛଆଡ଼େ କେତେ ବଡ଼ ଅନ୍ଧାରିଆ ପାହାଡ଼ଟିଏ ଠିଆହୋଇଛି—ଭାବିଲେ ଡର ମାଡ଼େ । ଅନୁତାପ ଆସେ ନାହିଁ, ଦୁଃଖ ଆସେ ନାହିଁ—ଡର ମାଡ଼େ । କେତେ ଦୂରକୁ ଗଲେ କେଜାଣି ସେହି ପାହାଡ଼ଟା ଆଖି ଉହାଡ଼ରେ ଛପିଯିବ ମୁଁ କଳନା କରି ପାରେ ନାହିଁ ।

ଏଇ ଦାମ ଭାଇ ! ପିଲଟି ଦିନୁ, ହେଉ ପାଇଲା ଦିନୁ ତାଙ୍କୁ ଦେଖିଆସିଛି । ବଡ଼ ଘରର ଗେହ୍ଲା ପୁଅ ସେ । ଆମ ଘରେ ତାଙ୍କର ବଡ଼ପଣିଆଁ ନ ଥାଏ । ବାପା ବୋଉ ତାଙ୍କୁ ସ୍ନେହ କରନ୍ତି । ସେ ବି ସେମାନଙ୍କୁ ଅତି ଭକ୍ତି କରନ୍ତି । ମୋତେ ଭଲ ପାଆନ୍ତି ।

ତାଙ୍କ ସଙ୍ଗେ ଏକୁଟିଆ ବୁଲିଯିବାକୁ କି ଖେଳିବାକୁ କେହି କେବେ ବାଧା ଦେଇନାହାନ୍ତି । କେଲେ ଦେଲେ ଆଉ ଲେଖାରେ କେହି କେହି ଥଟ୍ଟାରେ କହନ୍ତି, ଦାମକୁ ତୁ ବାହା ହେବୁ କିଲୋ ? ଦାମ ଭାଇ ବିରକ୍ତ ହୋଇ ଉତ୍ତର ଦିଅନ୍ତି, ତମର ସବୁ ଖାଲି ବାହା ହେବା କଥା !

ସ୍ୱର ନରମ କରି କହିଲି, ସବୁଦିନ ସମାନ ନ ଥାଏ ଦାମ ଭାଇ, ସବୁଦିନେ ମଣିଷ ନିର୍ବୋଧ ରହିପାରେ ନାହିଁ । ଯାଉ ସେ କଥା । ତେମେ ଗଛ ଉହାଡ଼ରେ କେତେବେଳୁ ଠିଆ ହୋଇ କଅଣ କରୁଥିଲ ?

ଚତେ ଦେଖୁଥିଲି । ବାପା ଯେତେବେଳେ ବନ୍ଧ ଉପରେ ଯାଉଥିଲେ, ତୁ ଆଉ ଦୌଡ଼ି ପଳେଇ ଆସିଲୁ । ଭାବୁଥିଲି, ବୋଧ-ହୁଏ ଧରା ପଡ଼ିଯିବ; କିନ୍ତୁ ତୁ ଅନ୍ୟମନସ୍କା ହୋଇ ଚାଲିଗଲୁ ଆଗକୁ ।

ମୁଁ ତ ତୁମକୁ ଆଉ ଛୁଏ ନାହିଁ । ତୁମେ ଯେ କୌଣସି ବେଳେ ଆସିଲେ ମୋତେ ଦେଖିପାରନ୍ତ; ଏପରି ଚୋର ପରି ଲୁଚି ଲୁଚି ମୋ ଆଡ଼କୁ ଚାହିଁବାରେ ଅଧିକ ହେଲା କଅଣ ? ଆଜି ଯଦି କେହି ଆସିଯାଇଥାନ୍ତା, କଅଣ ମନେ କରନ୍ତା ?

ଛବିବହିରେ ଅନେକ ଛବି ଦେଖିବାକୁ ମିଳେ । ଅନ୍ୟ ସମୟରେ ତୋତେ ଦେଖିବା ଠିକ୍ ସେମିତି । ତୋର ଅସାବଧାନ ନିଃସଙ୍କୋଚ ରୂପ ସଙ୍ଗେ ସେ ସବୁ ତୁଳନା କରିହୋଇପାରେ ନାହିଁ ।

ତମେ ଭାରି ବାଗେଇ କଥା କହିପାର; କିନ୍ତୁ ତମର କଥା ବା ତମର ଢଙ୍ଗ ମୋତେ ଭଲ ଲାଗେ ନାହିଁ ।

ଦିନେ ଭଲ ଲାଗୁଥିଲା ତ ।

ଆଜି ଆଉ ସେ ଦିନ ନାହିଁ । ମୁଁ ପିଲାଝିଅ ହୋଇନାହିଁ । ତୁମେ ଏଠୁଁ ଯିବଟି ।

ନ ଗଲେ ବି କେହି କିଛି ଭାବିବେ ନାହିଁ, ଜାଣୁ ତ ?

କହିଲି, ଜାଣେ । ତମେ ବାହା ହୋଇଛ । କିନ୍ତୁ କାହିଁକି, କାହିଁକି ଆଉ ତମେ ମୋ ସଙ୍ଗେ ଲାଗିଛ ଦାମ ଭାଇ ? ତମର କଥାରେ ଯଦି ତମ ସ୍ତ୍ରୀଙ୍କୁ ଭୁଲାଇପାର, ତମର ପିଲାଳିଆ ଖେଳ କୌତୁକରେ ଯଦି ତାଙ୍କୁ ବଶ କରି ଆପଣାର କରିପାର, ତେବେ, ତେବେ ସେ ତ ନିଜକୁ ଭାଗ୍ୟବତୀ ମଣିବେ । ପର ଘରର ଅଭିଆଡ଼ୀ ଝିଅ ପାଖରେ ଏ ସବୁ ଶୋଭା ପାଏ ନାହିଁ ।

ଠିକଏ ଭାବ କହିଲେ, ଦୋଷ ମୋର ନୁହେଁ ଗୀତା । ଦୋଷ ଭାଗ୍ୟର । ତୋ ସଙ୍ଗେ ମୋର ରକ୍ତର ସମ୍ବନ୍ଧ ନାହିଁ ଏ କଥା ସମସ୍ତେ ଜାଣନ୍ତି । ସେଥିପାଇଁ ପ୍ରଥମେ ଯେଉଁ ବାଧା ବା ଆପତ୍ତି ଉଠିଥିଲା, ସେତକ ବୋଉକୁ ଶିଖାଇ ମୁଁ କଟାଇ ଦେଇଥିଲି । ବାପା ଖୋଜିଲେ ଧନ । ଧନର କଅଣ ଅଭାବ ଅଛି ? ପୁଣି କହିଲେ, ଗାଁ ଜନଆ ସିଂଘାଣିନାକୀ । ପ୍ରକାରାନ୍ତରେ ଖବର ପଠାଇଲି । ସେ ଶୁଣିଲେ ନାହିଁ । ସେ ଯେପରି ଆଣ୍ଡୁଆ ଲୋକ ତ ଜାଣୁ । ତାଙ୍କର ଅବାଧ ହେବାକୁ ସାହସ ହେଲା ନାହିଁ ।

କେତେ କଅଣ କହିବାକୁ ପାଟି ଖଲଖଲ ହେଉଥିଲା । ଧୈର୍ଯ୍ୟର ସହିତ କଥାକୁ ବୁଲାଇ ନେବାକୁ କହିଲି, ଦାମ ଭାଇ, ଏ ସବୁ କାହିଁକି କହୁଛ ? ତମଠାରୁ ମୁଁ ଜବାବ ମାଗୁନାହିଁ । ଯାହା ହେବାର ହୋଇଛି । ଏବେ ତୁମେ ଯାଅ, ନୋହିଲେ ଖୋଲି କହ, ମୋଠାରୁ ତୁମେ କଅଣ ଚାହଁ ।

ତୋଠାରୁ ମୋର ଅନେକ କିଛି ଚାହିଁବାର ଅଛି । କିନ୍ତୁ, କିନ୍ତୁ···

ସଞ୍ଜର ମହଲଣ ଛାଇରେ ତାଙ୍କର ମୁହଁରେ ଲାଳସାର ପ୍ରଭା ଉକୁଟି ଉଠିଲା । ଆଖିରେ ପ୍ରଲୋଭନ ନିଆଁ ଜଳିଉଠିଲା । ମୁଁ ବୁଝିଲି । ତାଙ୍କଠାରେ ସେପରି ଭାବ ମୁଁ ଅନେକ ଥର ଦେଖିଛି । ଭଲମନ୍ଦ ବୁଝିବାର ଜ୍ଞାନ ହେଲାଦିନୁ, ନାରୀତ୍ୱର ଦାୟିତ୍ୱ, ଆପଦ ବିପଦ ଜାଣିବା ଦିନୁ ତାଙ୍କ ପାଖରୁ କରେଇ ଆସିଛି । ଦୂରେଇ ଆସିଛି । ମୁଣ୍ଡିଟିକୁ ଗୁଡିକୁ ଆଉଜାଇ ପିଠି ଆଉଁସି ଗେଲ କରିବାକୁ ସୁଯୋଗ ଦେଇନାହିଁ । ବିବାହର ବାର ମାସ ପରେ ଆଜ ତାଙ୍କ ସଙ୍ଗେ ନିରୋଳାରେ ପ୍ରଥମ ଦେଖା । ଭାବିଥିଲି, ସେ ବଦଳିଥିବେ;

ନିଜର ଓ ଅନ୍ୟର ଦାୟିତ୍ୱ, ଭଲ ମନ୍ଦ ଉପଲବ୍ଧି କରିଥିବେ । କିନ୍ତୁ ମୋର ଧାରଣା ଭୁଲ୍ । ସଜନା ଛୁଇଁଟିକ ଗୋଟାଇ ଧରିଲି । କହିଲି, 'ସଞ୍ଜ ହେଲା, ମୁଁ ଯାଏଁ । ସଞ୍ଜବତି ଲଗାଇବ ।

ସେ ମୋ ବାହୁ ଉପରେ ହାତ ପକାଇଲେ । ରାଗରେ ଆଖି ଲାଲ କରି ହାତ ଛୁଆଡ଼ି ଘୁଞ୍ଚିଆସିଲି; କିନ୍ତୁ ତାଙ୍କର ବଳିଷ୍ଠ ହାତକୁ ଖସାଇ ପାରିଲି ନାହିଁ । କହିଲି ରୁକ୍ଷସ୍ୱରରେ, ଛାଡ଼ ।

ହସି ହସି ସେ କହିଲେ, ଯାଉଛୁ କାହିଁକି ଗୀତା, ଶୁଣ ।

ଆହୁରି ବିରକ୍ତ ହୋଇ କହିଲି, ଛାଡ଼ କହୁଛି, ନୋହିଲେ— । ତଥାପି ସେ ଛାଡ଼ିଲେ ନାହିଁ । ଡାକ ଛାଡ଼ିଲି, ବୋଉ—

—ପାଞ୍ଚ—

**ସେ** ହାତ ଛାଡ଼ିଦେଲେ । ବୋଉ ବି ତେଣୁ ଜବାବ୍ ଦେଇ ଆସି ପହଞ୍ଚିଲା । କଅଣ କହିବ ଭାବୁଛି, ଦାମ ଭାଇ ପକେଟରୁ ଖଣ୍ଡେ ଚିଠି କାଢ଼ି ବୋଉ ହାତକୁ ବଢ଼ାଇଦେଲେ । ସଙ୍ଗେ ସଙ୍ଗେ କହିଲେ, ଆଜି କଟକ ଯାଇଥିଲି, ଖୁଡ଼ୀ । ହେଲି ଦାଦାଙ୍କ ସଙ୍ଗେ ଦେଖା ହୋଇଥିଲା । ସେ ଏ ଚିଠି ଖଣ୍ଡି ଦେଇଛନ୍ତି, ନିଅ । ଭାରି ଆଗ୍ରହରେ ବୋଉ ଚିଠିଖଣ୍ଡି ନେଲା । ମୁଁ ରହି ରହି କହିଲି, କାଉ ପରି ରଡ଼ୁଥିଲା । ଦେଖିଲୁ ବୋଉ ! ମୋର ସ୍ୱର ଥରି ଉଠିଲା । ବୋଉ ହସିଲା । କହିଲା, ଭିତରକୁ ଆ ବାବୁ !

ମୁଁ କହିଲି, ଆସ ଦାମ ଭାଇ, ଭିତରକୁ । ପାନ ନେବ ନାହିଁ ?

ସେ କହିଲେ, ଡେରି ହେଲାଣି, ଯାଉଛି; ପରେ ଆସିବି ।

ଅଭିମାନର ଛଳନା କରି କହିଲି, ବୋଉ ମ, ଆଜିକାଲି କଅଣ ଦାମ ଭାଇଙ୍କର ବେଳ ଅଛି କି ? ବର୍ଷେ ହେଲା ତ ତାଙ୍କର ମୋଟେ ଦେଖା ଦର୍ଶନ ମିଳୁନାହିଁ । ସବୁବେଳେ ଖାଲି କାମ । କାମ ଏମିତି ବଢ଼ିଯାଇଛି !

ସେ କହିଲେ, ଦେଖୁଛ ଖୁଡ଼ୀ, ଗୀତା କେମିତି ମିଛଟାରେ ଅପବାଦ ଦେଇ କହୁଛି ? ତମ ଜୋଇଁ ଙ୍କ ରାଣ, ସତ କହ, ମୁଁ ଆସେ ନାହିଁ ?

ମୁଁ ତୁନି ରହିଲି । ବୋଉ କହିଲା, ଆସୁ ସେ ଠିଆ ଠିଆ ଯାଉ । ବସିକରି ପଦେ ଭଲକରି କହୁନାହିଁ କି ଗୀତା ସଙ୍ଗେ ବେଳଛେଳି ଲଗାଉନାହିଁ । ସେଇଥିପାଇଁ ସେ କହୁଛି । ଆଲୋ ଗୀତା, ସେ ପର ଦଉଡ଼ ଦଉଡ ଆସିଛି, ଡେରି କରୁଥିବ, ଯାଉ, କାଲିଆଉ଼କୁ ଆସିବ ।

ଖଞ୍ଜା ଭିତରକୁ ପଶି ଯାଉଁ ଯାଉଁ କହିଲି, କାଲି ନିଶ୍ଚେ ଆସିବ ଦାମ ଭାଇ । ତମକୁ ରାଣ ଅଛି, ତାଙ୍କର ରାଣ । କହିଲେ, "ହଉ ।"

କଣେଇଁ ଚାହିଁଲି । ଦାମ ଭାଇ ଚାଲିଯାଉଛନ୍ତି । ଥରଟିଏ ସେ ଫେରି ଚାହିଁଲେ ନାହିଁ । ମନଟା କପରି ଗୋଳେଇ ହେଲା । ସତେ ଦାମ ଭାଇଙ୍କର ଦୋଷ ହେବ ନାହିଁ । ମୋ ଭୁଣ୍ଡର ପଦଟିଏ କଥାରେ ସେ ବିଶ୍ୱାସ କରିଥିଲେ । ଯେତେ ଯୁଆଡ଼ୁ ବାହାଘର ସମ୍ବନ୍ଧ ଆସିଲା ସେ ମନା କରିଦେଲେ । ମୋତେ ବାହା ହେବେ ବୋଲି ଅଡ଼ି ବସିଲେ । ସମସ୍ତେ ସିନା ମଙ୍ଗିଲେ, ମହନ ଜେଠା ନାହିଁ କରିଦେଲେ । ଦାମ ଭାଇକୁ ଧମକାଇଲେ, ପୁଣି ଚିଡ଼ିଲେ । କହିଲେ, ଗୀତାକୁ ବାହାହେବା କଥା ଯଦି ଆଉ ଥରେ ତୁଣ୍ଡକୁ

ଆଣୁ ତ ଖେଳର ସର୍ବନାଶ କରିବ । ଚଳେଚଳାନ୍ତ ହୋଇ ବାଟରେ ଠିଆ ହେବେ । ସେମାନଙ୍କର ମଙ୍ଗଳ ଗୃହୁଁ ତ ମୋ କଥା ମାନ । ବାମ ଭାଇ ବାପାଙ୍କର ଅବାଧ ହେଲେ ନାହିଁ । ବରବେଶ ସାଜ ପରଗାଁକୁ ଯାଇ ବାହା ହୋଇ ଆସିଲେ । ଭଲ କଲେ ତ, ଆଉ କାହାଁକି ନଳଠାପଣ ?

ଆଖିରୁ ଲୁହ ଝରିଲା । କୋହ ଉଠିଲା ।

---ଛଅ—

**ସ**ଞ୍ଜବତି ଲଗାଇ ବୃନ୍ଦାବତୀଙ୍କ ଚଉରା ତଳେ ରଖି ପ୍ରଣାମ କଲି । ଠାକୁରଙ୍କ ପାଖରେ ଲୋକେ ଅନେକ ଦୁଃଖ ଜଣାନ୍ତି । ମୋର କିନ୍ତୁ କୌଣସି ଦୁଃଖ ଜଣାଇବାର ନ ଥିଲା । ତଥାପି କେଜାଣି କିପରି ମୋର ଆଖି ଆଗରେ ଜଣକର ମୂର୍ତ୍ତି ଆସି ଠିଆ ହେଲା । ମନର କେଉଁ ଅଜଣା କୋଣରେ ତାଙ୍କର ସେହି ସୁନ୍ଦର ମୂର୍ତ୍ତି ଆଜିକୁ ଆମ୍ଭା ନଇଁ ପଡ଼ିଲା । ଦୁଇବର୍ଷ ତଳେ, ଏମିତି ସଞ୍ଜବେଳେ ସେହି ଚଉରା ପାଖରେ ତାଙ୍କ ସଙ୍ଗେ ମୋର ପ୍ରଥମ ଦେଖା । ତା ପରେ ତ ଅନେକ ଘଟଣା ଘଟିଯାଇଛି । ସ୍ମୃତିର ପରଦା ଉପରେ ଆନନ୍ଦ ନିରାନନ୍ଦର କେତେ ଛବି ଟାଣି ହୋଇଛି ।

ବୋଉ ଡାକିଲା, ଗୀତା, ନଳଟଣି ଲଗାଇ ଚାରି ଖଣ୍ଡ ପଢ଼ିଲୁ ମା ।

ଉଠିଆସି ନଳଟଣି ଲଗାଇଲି । ମହାନ ଜେଠାଙ୍କ ଠାକୁର ମନ୍ଦିରରୁ ସଞ୍ଜ ଆରତିର ଘଣ୍ଟା ଶୁଭିଲା । ବୋଉ କାନ୍ଥରେ ମୁଣ୍ଡ

ଲଗାଇ ପ୍ରଣାମ କଲି । କହିଲି, ହେ ରାଧାମାଧବ ! ଗୁଣୁଗୁଣୁ କରି ଆଉ କଣ କହିଲି ମୁଁ ବୁଝିପାରିଲି ନାହିଁ ।

ଚିଠି ଖୋଲିଲି । ଷ୍ଟ୍ରେଟ ବଡ଼ ଦୁଇଖଣ୍ଡି । ଖଣ୍ଡିଏ ଲେଖା ହୋଇଛି ମୋ ପାଖକୁ, ଆଉ ଖଣ୍ଡିକ ବୋଉ ପାଖକୁ ।

କେବେ କେମିତି ବାପା ଚିଠି ଦେଲେ ମୋ ପାଖକୁ ଲେଖନ୍ତି । ଯେଉଁଥର ବୋଉ ପାଖକୁ ଚିଠି ଥାଏ, ସେଥିରେ ମୋ ବାହାଘର ପ୍ରସଙ୍ଗରେ ଲେଖା ହୋଇଥାଏ । ଏଥର ମଧ୍ୟ ସେମିତି କିଛି ହୋଇଥିବ ବୋଲି ମୁଁ ଅନୁମାନ କଲି ।

ବୋଉ କହିଲା, ପଢ଼ ମା ।

ମୁଁ ମୋ ଚିଠି ଆଗ ପଢ଼ିଲି—

ମା ଗୀତା,

ଏଥର ଘରୁ ଆସିଲାଦିନୁଁ ମୋ ଦେହ ସେତେ ଭଲ ରହୁନାହିଁ । ବେଳେବେଳେ ଆଣ୍ଠୁ ଗଣ୍ଠି ଦରଜ ହେଉଛି । ବେଙ୍ଗିଗ୍ ହାଡ଼ରେ କେମିତି ଗୋଟାଏ ଜଖମ ଅନୁଭବ କରୁଛି । ଡାକ୍ତର-ଖାନାରୁ ଔଷଧ ଖାଉଛି । ବର୍ତ୍ତମାନ ଦେହ ଟିକଏ ଭଲ ଅଛି ।

ତୁ ଲେଖିଥିଲୁ, ଖଣ୍ଡେ ଶୀତ ଧୋତିହେଲ ପଠାଇବାକୁ । ଗୋଟାଏ ଟିଉସନ୍ ଜୁଟିଛି । ମାସକୁ ବୃତିଟଙ୍କା ଦରମା । ପନ୍ଦରଦିନ ଗଲାଣି । ଆଉ ପନ୍ଦର ଦିନକୁ ମାସ ପୂରିଲେ ବାବୁ ଟଙ୍କା ଦେବେ । ସେହି ଟଙ୍କାରେ ତୋ ପାଇଁ ଜାମା, ଧୋତିହେଲ, କାଚ କିଣିଦେବି । ମା ମୋର, ମନକଷ୍ଟ କରିବୁ ନାହିଁ । ଠାକୁରେ ତ ଆମକୁ ଦରିଦ୍ର କଲେ, କଣ କରିବା ? ଚିଠି ଦେବୁ । ତୋ ଚିଠି ପାଇଲେ ମୁଁ କେତେ ଖୁସି ହୁଏ ଜାଣୁ ? ଇତି ।

ତୋର, ବାପା ।

.ଚଠି ପଢ଼ିସାରି ବୋଉ ମୁହଁକୁ ଚାହିଁଲି । ତାର ଦୁଇ ଆଖି ଲୁହ ଝଳ ଝଳ ହୋଇଉଠିଛି । ମୋତେ ଚାହିଁ ଦୀର୍ଘନିଶ୍ୱାସ ପକାଇ କହିଲା, ସେହି ରୋଗ ତ ତାଙ୍କୁ ମଶିଷପଣିଆଁରୁ ରଖିଲାଣି ଲୋ ! ଆଜକୁ ପାଞ୍ଚବର୍ଷ ହେବ କି କଅଣ, ବେଳେବେଳେ ସେ ବେଁଶିରି ହାଡ଼ ଦରଜ କଥା କହନ୍ତି । ଯାହା ଅର୍ଜିଲେ ସବୁ ଘରକୁ ଦେଲେ । ଭଲକରି ଚିକିତ୍ସା କରିବାକୁ କଅଣ ତାଙ୍କର ମନ ହେଉଛି ?

ଭାବିଲି, ଆମରି ପାଇଁ ସିନା ସେ ଏତେ କଷ୍ଟ ପାଉଛନ୍ତି । ଆମରି ମୁଁ ମୁହଁରେ ଆହାର ଦେବାକୁ ଠଙ୍କା କେଇଟା ପାଇଁ ବିଦେଶରେ ପଡ଼ି ଦିନରାତି ପରିଶ୍ରମ କରୁଛନ୍ତି । ତହିଁରେ ପୁଣି ଭଲକରି ମୁଠାଏ ଖାଇବାକୁ ପାଉନାହାନ୍ତି । ଯାହା ମିଳିଲା ନିଜ ହାତରେ କଞ୍ଚା ଦରସିଝା କରି ରାନ୍ଧି, ମୁଠାଏ ଖାଇ ଇସ୍କୁଲରେ ଖଟି ଖଟି ବେଲ କଟୁଛନ୍ତି । ତହିଁରେ ପୁଣି ଟିଉସନ୍ କରୁଛନ୍ତି ।

ଘର ଡ଼ିହ ଓ ବାରି କେଇଗୁଣ୍ଠ ଛଡ଼ା ଚାଷ କରିବାକୁ ବାଡ଼ିଗୋବରରେ ଗୋଟେ ଜମି ନାହିଁ । ଗାଁର ଆଉ ପାଞ୍ଚଟାଙ୍କ ପରି ବିଲମାଟି ହିଡ଼ରେ ଲଦି କୁଟୁମ୍ବ ପୋଷିବାର ଉପାୟ ନାହିଁ । ଭେଣ୍ଡା ପୁଅ ନାହିଁ, ଚାକିରି ପଇସା ରୋଜଗାର କରି ଆଣି ଦେବ । ମୁଁ ତ ଝିଅଟାଏ । ଓଲଟି ଗଳଗ୍ରହ । କଷ୍ଟ ଦେବାକୁ ମୋର ଜନ୍ମ । ମୋ ଚିନ୍ତା ତାଙ୍କୁ ଦିନୁଦିନ ବେଶି କ୍ଷୀଣ କରୁଛି । ନ ମଲି ଯାହା । ଜନ୍ମ ହୋଇଥିଲି ବାପମାଙ୍କୁ ଦହଗଞ୍ଜ କରିବାକୁ ।

ବୋଉ ଆଖିରୁ ଲୁହ ପୋଛି କହିଲା, ପଢ଼ ମା, ଆର ଚଠି ଖଣ୍ଡି । ମୁଁ ଚଠିଖଣ୍ଡିରେ ଥରେ ଆଖି ପକାଇଗଲି । ଲେଖିଛନ୍ତି, କଟକରେ ବଧୂବାବୁ ବୋଲି କିଏ ଜଣେ ହାଇସ୍କୁଲ ମାଷ୍ଟର

ଅଛନ୍ତି । ତାଙ୍କର ଗୋଟିଏ ପୁଅ, ବି. ଏ. ପାଶ୍ କରି କେଉଁ ସର୍କାରୀ ଅଫିସରେ କାମ କରନ୍ତି । ଷାଠିଏ ସତୁରୀ ଟଙ୍କା ଦରମା । ଯାଙ୍କର ନାଆଁ ପ୍ରବୋଧ । ବଧୂବାବୁ ଗୃହିଁାନ୍ତି, ବୋହୂଟିଏ କରିବେ, ସୁନ୍ଦର ହୋଇଥିବ, ବୁଦ୍ଧି ଭଲ, ପାଠ କିଛି ପଢ଼ିଥିବ, ଧୀର, ଶାନ୍ତ, ସୁଚରିତା । ଦେବାନେବା ଗୃହିଁାନ୍ତି ନାହିଁ । ଭଗବାନ୍ ତାଙ୍କୁ କୌଣସି କଥାରେ ଊଣା କରିନାହାନ୍ତି । ଗରିବଘରର ଝିଅ ହେଲେ ଉତ୍ତମ; ସବୁ କାମରେ ଧୂରନ୍ଧର ହେବ । ଜାତକଟି ପକା ଶୁଝିବ । ବାହାଘର ଠିକଣା ହେବା ଆଗରୁ ତାଙ୍କର ସ୍ତ୍ରୀ ଝିଅକୁ ଥରେ ଦେଖିବେ ।

ଆହୁରି ଲେଖାଥିଲା, ମୁଁ କୁଆଡ଼େ ସବୁ ଗୁଣରେ ପରିପୂର୍ଣ୍ଣ । ଜାତକ ଶୁଝିଲେ ବାହାଘର ନିଶ୍ଚୟ ହେବ । କୌଣସି ଗୋଟିଏ ଆଗରେ ମୋତେ କଟକ ନେଇଗଲେ ବଧୂବାବୁଙ୍କ ସ୍ତ୍ରୀ ଦେଖିବେ । ଥରେ ଦେଖିଲେ ସେ ଆଉ ନାହିଁ କରିପାରିବେ ? ମୋ ପରି ଝିଅ ଆଉ ସେ ଦେଖିବେ କେଉଁଠି ଯେ !

ଅତି ଶୀଘ୍ର ମୋର ଖଣ୍ଡେ ଟିପ୍ପଣୀ ପଠାଇବାକୁ ସେ ବାରମ୍ବାର ଅନୁରୋଧ କରିଥିଲେ । ଚିଠିରେ ପ୍ରବୋଧବାବୁଙ୍କ ରୂପଗୁଣ, ଢଙ୍ଗଢ଼ାଙ୍ଗ ସମ୍ବନ୍ଧରେ ଅନେକ କଥା ଲେଖାଥିଲା ।

ମୋତେ ତୁନି ରହିବାର ଦେଖି ବୋଉ ପୁଣି କହିଲା, ପଢ଼ ସେ ଖଣ୍ଡି । ମୁଁ ତା ହାତକୁ ଚିଠି ଦେଇ କହିଲି, ତୁ ପଢ଼ । ମୋ ମୁଣ୍ଡ କଅଣ ହେଉଛି । ଯାଉଛି ଶୋଇବି ।

ବୋଉର ଉତ୍ତରକୁ ଅପେକ୍ଷା ନ କରି ଶୋଇଲା ଘର ଭିତରକୁ ଗଲି । ଘର ବୋଲି ତ ମୋଟେ ଦୁଇ ବଖରା । ଝରକାରେ ରେଷେଇ ହୁଏ । ଆରଟିରେ ଶୁଆବସା କରୁଁ ।

ଡାହାଣ କରକୁ ଯେଉଁ ଶ୍ଳେଟ ଖଣ୍ଡିକ, ସେଥିରେ କାଠ, ଘଷି, ଆଜିଯାଏଁ ଆଙ୍କୁବଙ୍କୁଚ ମାଙ୍କୁବଙ୍କୁଚ ଗଦା ହୋଇଥାଏ ।

ମୁଁ ଜାଣେ, ବୋଉ ଭଲ ପଢ଼ିପାରେ ନାହିଁ । ଅକ୍ଷର ଚିହ୍ନି କ, ବ, ଚ କରି ଯାହା ପଢ଼େ ସେଥିରୁ ସେ ଅର୍ଦ୍ଧେ ବୁଝିପାରେ ନାହିଁ । ଶ୍ଳେଟ ଚିଠିଖଣ୍ଡ ପଢ଼ିବାକୁ ତାକୁ ଅନ୍ତତଃ ଦୁଇଘଣ୍ଟା ଲାଗେ । ତଥାପି ସେ ଆପତ୍ତି ନ କରି ଚିଠିଖଣ୍ଡି ନେଇ ଅଣ୍ଟାରେ ଖୋସିଲା । ସେ ବୋଧହୁଏ ବୁଝିପାରିଲା, ଚିଠିରେ ମୋ ଓର ବାହାଘର ବିଷୟ ଲେଖା ହୋଇଛି ।

ନାଲଟିଣ ନେଇ ଶୋଷେଇଘର ଭିତରକୁ ଗଲା । ମତେ ଶୁଣାଇ କହିଲା, ଗୀତା, ଶୋଇପଡ଼ିବୁ ନାହିଁ । ଗଣ୍ଡାଏ ଖାଇଦେଇ ଶୋଇବୁ ପଛେ । ତୋର ଯେଉଁ ନିଦ !

କହିଲି, ମୁଁ ଚେଇଁକରି ଶୋଉଛି । ଡାକିଲେ ଉଠିବି ।

—ସାତ—

**ଅ**ନ୍ଧାର ଘର । ଆଲୁଅ ଆସିବ ବୋଲି ବୈଠକ ଝରକା ଖୋଲିଦେଲି । ଆକାଶର ମୁଣ୍ଡ ଉପରେ ମଥାମଣି ପରି ଅଷ୍ଟମୀର ଉଜ୍ଜ୍ୱଳ ଜହ୍ନ ଝଟକି ଉଠୁଛି । ଶିରଶିରିଆ ଥଣ୍ଡା ପବନ ନଣ୍ଡପଠା ଆଡ଼ୁ ସୋଲିଷ ଫୁଲର ମହକ ବୋହିକରି ଘର ଭିତରକୁ ପଶି- ଆସିଲା । ଦେହ ଟାଙ୍କୁର ଉଠିଲା । ହେଁସ ଖଣ୍ଡି ତଳେ ପାରି ଛିଣ୍ଡା ସତରଞ୍ଜିଟି ତା ଉପରେ ପକାଇଲି । ଝରକା ବନ୍ଦ କରି କାନି ଘୋଡ଼ିହୋଇ ଜାକିଜୁକି ଶୋଇପଡ଼ିଲି ।

ବାର କଥା ଆସି ମନରେ ପଶିଲା, ବାରବୁଡଳଆ ଚିନ୍ତା । ବାପାଙ୍କର ଚଟିଖଣ୍ଡି ପୁଣି ଯେପରି କିଏ ଆଗରେ ମେଲିକରି ଧରିଲା । ମୋର ବାହାଘର କଥା । ନୂଆ ନୁହେଁ, ଗୁରି ବର୍ଷ ହେଲା କେତେ ପାତ୍ର, କେତେ ପ୍ରସ୍ତାବ ଆସିଛି । କେଉଁଠି ଟିପଣା ଶୁଝିଛି ତ କେଉଁଠି ନାହିଁ । ଯେଉଁଠି ନାଗନାଡ଼ୀ କି ନରରାକ୍ଷସ ପଡ଼ିଛି ସେ ପ୍ରସ୍ତାବ ତ ଭାଙ୍ଗିଛି । ଯେଉଁଠି ଜାତକ ଶୁଝିଲା, ମୋର ରୂପଗୁଣ ସମ୍ବନ୍ଧରେ ବରପକ୍ଷ ପଚରା ଉଚରା କରିଛନ୍ତି । ଏ ପରୀକ୍ଷା ଡେଇଁଲେ ଦେବା ନେବା କଥା ପଡ଼େ । ପ୍ରସ୍ତାବ ଭାଙ୍ଗେ ।

ପିଲା ଥିଲି । ଖେଳକୌତୁକରେ ବେଳ କଟୁଥିଲା । ନୂଆ ଯୌବନର ଢେଉଳିକ ଯେତେବେଳେ ଦେହରେ ଉତ୍ତେଜନା ଆଣି ଦେଲା, ମନ ଚଞ୍ଚଳ ହୋଇ ଉଠିଥିଲା । ଯୁବକର ପରଶ ଆଣୁଥିଲା ପ୍ରାଣରେ ପୁଲକ । ଅଜଣା ପୁଲକ । ସେତିକି । ମିଳନ କଅଣ ଜାଣିନାହିଁ, ଜାଣିବାର ଆଗ୍ରହ କି ପ୍ରବୃତ୍ତି ହୋଇ ନ ଥିଲା । ବିବାହ କଥାଟା ମନରେ ପଶି ନ ଥିଲା । କିନ୍ତୁ ଯେଉଁଦିନ ସଞ୍ଜବେଳେ ଏଇ ଅନ୍ଧାର ଘରେ ଦାମ ଭାଇ ମୋତେ ତାଙ୍କର ଛାତି ଉପରେ ଧରି ନଇଁଲା ମୁହଁରେ ବୋକ ଦେଲେ, କାନ ପାଖରେ ଗୁନଗୁନ କହିଲେ, ଗୀତା, ତୁ ମୋର, ଚିରଦିନ ମୋର, ଇହକାଳ ପରକାଳ ସବୁବେଳେ, ତୋତେ ମୁଁ ବାହାହେବି, ଯେମିତି ହେଉ । ବାହା-ହେବା କଥାଟି ପ୍ରଥମ କରି ମୋ ଶିରାପ୍ରଶିରାରେ ବିଜୁଳି ଚମକ ଆଣିଥିଲା ସେଦିନ ସଞ୍ଜରେ । ସେତେବେଳେ ମୋର ବୟସ ତେଉଦ । ଗୁରିବର୍ଷ ତଳର କଥା ।

ସେଦିନରୁ ଦାମ ଭାଇଙ୍କ ପାଖରୁ ମୁଁ ଦୂରେଇ ରହିଛି । କିନ୍ତୁ କେହି କିଛି ବୁଝିପାରନ୍ତି ନାହିଁ । ବୁଝେ ମୁଁ, ଅଉ ବୋଧହୁଏ ବୁଝିଥିବେ ସେ । ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲଗୁଥିବ ।

ପିଲାଦିନୁ ସେ ମୋତେ ଭଲ ପାଆନ୍ତି । ଗରିବ ବଡ଼ଲୋକ ଭେଦଭାବ ତାଙ୍କଠାରେ ନ ଥାଏ । ମୋତେ ସେ ସଙ୍ଗରେ ନଈକୁ ଗାଧୋଇ ନିଅନ୍ତି । ମେଲଣ ଦେଖାଇବାକୁ ଆଖପାଖ ଗାଁକୁ ନିଅନ୍ତି । ଯାହା ଖର୍ଚ୍ଚ ଦିଅନ୍ତି; ତା ଛଡ଼ା ଯାହାରୁ ଭଲ ଭଲ ଜିନିଷ କିଣି ମୋତେ ସେ ଦିଅନ୍ତି । ବାପାବୋଉଙ୍କୁ ସେ ଭକ୍ତି କରନ୍ତି । ବେଳେବେଳେ ମଦନ ଜେଠାଙ୍କୁ ଲୁଚାଇ ଅଭାବ ଅସୁବିଧା କଥା ବୁଝନ୍ତି । ସେଥିପାଇଁ ବାପାବୋଉ ମଧ୍ୟ ତାଙ୍କୁ ଭଲ ପାଆନ୍ତି । ତାଙ୍କ ସଙ୍ଗେ ମୋତେ ଛାଡ଼ିଦେବାକୁ ଆପତ୍ତି କରିବା ପରିବର୍ତ୍ତେ ଆଗ୍ରହ, ଆନନ୍ଦ ଅନୁଭବ କରନ୍ତି ।

ଦାମ ଭାଇଙ୍କ ସଙ୍ଗରେ ମୁଁ ତାଙ୍କ ଘରକୁ ଯାଏ । ପାଞ୍ଚଝିଅରେ ସେ କୋଳପୋଛା ପୁଅ । ଝିଅମାନେ ସମସ୍ତେ ପରଘରି । ମଦନ ଜେଠା ଓ ଜେଠେଇଙ୍କର ସେ ଆଖିର ପିତୁଳା । ଅଳଅଳ, ଗେଲବସର । ଯାହା କରନ୍ତି, ବାଧା ଦିଅନ୍ତି ନାହିଁ । ତାଙ୍କ ସଙ୍ଗେ ମୁଁ ଗଲେ ମୋତେ ବି ଜେଠା ଜେଠେଇ ସୁଖ ପାଆନ୍ତି । ଖାଇବାକୁ ଦିଅନ୍ତି । ଖେଳିବାକୁ କଣ୍ଢେଇ ଦିଅନ୍ତି । ମୋ ରୂପ ଓ ଢଙ୍ଗଢାଙ୍ଗକୁ ଜେଠେଇ ପ୍ରଶଂସା କରନ୍ତି ।

ଦାମ ଭାଇଙ୍କ ସଙ୍ଗେ ବୁଲିବାକୁ ବା ଖେଳିବାକୁ ମୋତେ ଭଲ ଲାଗେ । ବାପାବୋଉଙ୍କ ପାଖେ ଯେଉଁ ବିଷୟରେ ସଙ୍କୋଚ, ତାଙ୍କ ପାଖରେ ସେ ସଙ୍କୋଚ ନ ଥାଏ । ମୋର ଦେହ, ମୋର ଲୁଗାପିନ୍ଧା, ମୋର ରୂପ ଉପରେ ଯେପରି ତାଙ୍କର ନଜର ବେଶି । ସେତେବେଳେ କିଛି ବୁଝି ନ ଥିଲି, ତାଙ୍କର ହାତର ପରଶ ସର୍ବାଙ୍ଗରେ ଅନୁଭବ କରି ପିଲାଳିଆ ମୋହରେ, ଅଜଣା ଆନନ୍ଦରେ ମୁଗ୍ଧ ହୋଇ ରହୁଥିଲି । କିନ୍ତୁ ବୁଝିଲି ସେଦିନ

ସଞ୍ଜରେ, ସେହି ଯେ ଗୋଟିଏ କଥା ସେ ମୋ କାନରେ କହି-ଥିଲେ, 'ବାହା ହେବ ।'

ଦିନ ଦିନକର ଘଟଣା ମନେ ପଡ଼ିଲେ ଆଜି ନିଜକୁ ଲାଜ ମାଡ଼େ । ସତେ ! କେତେ କଥା ସେ ଭୁଣ୍ଡି ଖୋଲି କହିଥିଲେ ମୁଁ ବି ନିଃସଙ୍କୋଚରେ ତାଙ୍କୁ ଜବାବ ଦେଉଥିଲି । ମୁହଁ ଖୋଲି କହିବାକୁ ଆଜି ଜିଭ ପଇଣ୍ଟୁ ନାହିଁ । ତାଙ୍କୁ ଦେଖିଲେ କେବଳ ତାଙ୍କ ପରଶ ମୋହ ପାଇଁ ବ୍ୟାକୁଳ ହୋଇ ପଡ଼ୁଥିଲି । ବୋଉ ପାଖରୁ ନଗେଲାକୁ ଚାଲି ଆସିବାକୁ କେତେ ଆଉ ଧରି କଥା କହୁଥିଲି—ବାମ ଭାଇ, ମୋତେ ଦୁଇଟା ବଉଳଫୁଲ ତୋଳି-ଦେଲ; ବାମ ଭାଇ, ମୋତେ ଗୋଟାଏ ଚିତ୍ର ଆଙ୍କିଦେଲ । ଏମିତି କେତେ କଅଣ ।

ବଉଳ ମୂଳକୁ ଦିହେଁ ଆସୁଁ । ଦୁହିଁଙ୍କ ମୁହଁରେ ହସ । ଦୁହିଁଙ୍କ ମନରେ ଅଜଣା ମୋହ । ନ ଜାଣିଲା ପରି ଜାଣି ଜାଣି ତାଙ୍କ ଦେହକୁ ଲଗି ଲଗି ଆସେ । ସେ ବି ମୋତେ ଆଉଜାଇ ନିଅନ୍ତି । ବଉଳ ଗଛରୁ ଫୁଲ ନ ତୋଳି କହନ୍ତି, ଭୁଇଁ ତ ବଉଳ ଗଛ ଗୀତା । ହସି ହସି ଲେଟିଯାଏ ତାଙ୍କ ଉପରେ ।

ଆମର ଲୀଳାଖେଳାରେ ଯେ ସନ୍ଦେହର କୌଣସି କଥା ଥିଲା, ଏହା ଆଜିଯାଏ କାହାର ମନରେ ପଶିନାହିଁ । ଅନ୍ୟମାନଙ୍କ ଉହାଡ଼ରେ ଦିଓଟି ଜୀବ ଯେ କେଉଁ ଅଜଣା ମୋହରେ ଲୁଚକାଳି ଖେଳୁଛନ୍ତି ସେ କଥା ବା ବିଶ୍ୱାସ କରିବ କିଏ କପରି ? ସବୁ ତ ପିଲାଚାଳି ଯାଏ ।

ବାହାଘରର ଚିନ୍ତା ମନରେ ମୋର ପଶିଲା । ଭଲମନ୍ଦର ଭାବ ଆସି ମୋର ଅସ୍ଥିର ବିବେକକୁ ସ୍ଥିର କରିଦେଲା ।

ଅନ୍ୟମାନଙ୍କ ଆଗରେ ଦାମ ଭାଇଙ୍କ ପ୍ରତି ପୂର୍ବର ସ୍ନେହ ଓ ପୂର୍ବର ଭାବ ପ୍ରକାଶ କଲେ ବି ନିରୋଳାରେ ତାଙ୍କ ପାଖରୁ ଦୂରେଇ ରହେ । ସେ ଜାଣନ୍ତି, ବୁଝନ୍ତି, ମୋର ମନରେ ପରିବର୍ତ୍ତନ ଆସିଛି । କିଛି କହିପାରନ୍ତି ନାହିଁ । କହିବାର ସୁଯୋଗ ପାଆନ୍ତି ନାହିଁ । ମୁଁ ତାଙ୍କୁ ସେପରି ସୁଯୋଗ କେବେ ଦିଏନାହିଁ ।

ମନରେ କେତେ ଆଶା ଧରି ସେ ଆସନ୍ତି । ମୁଁ ବୋଉ ଆଗରେ ହସି ହସି ତାଙ୍କୁ କଥା କହେ, ପାନ ଭାଙ୍ଗିଦିଏଁ, କେତେ ପ୍ରକାର ନିଶାହ ଥଟ୍ଟା କରେଁ, ପୁଣି ଆସିବାକୁ ଅନୁରୋଧ କରେଁ । ବୋଉ ଅନ୍ୟଆଡ଼େ ଚାଲିଗଲେ ମୁଁ କାମର ବାହାନା କରି ଉଠିଯାଏଁ ।

ସେ କିଛି ନ ବୁଝିଲା ପରି ବଲ ବଲ କରି ମୋ ମୁହଁକୁ ଚାହିଁ ଧୀରେ ଧୀରେ ଫେରିଯାଆନ୍ତି । ମୁଁ ସ୍ୱର କଅଁଳେଇ ତାଙ୍କୁ ଶୁଣାଇ କହେଁ, ଦାମ ଭାଇ, ତମକୁ ରାଣ ଅଛି, ନିଶ୍ଚୟ କାଲି ଆସିବ । ସେ ଶ୍ରେଷ୍ଠ ହଉଟିଏ କହି ଚାଲିଯାଆନ୍ତି ।

ସେ ଆସନ୍ତି, ଆସନ୍ତି ଥରକୁ ଥର । ଲୋକଦେଖଣାରେ ମୋର ବ୍ୟବହାରରେ ପରିବର୍ତ୍ତନ ଦେଖିପାରନ୍ତି ନାହିଁ । ସବୁ ବୁଝନ୍ତି, କିଛି ବୁଝନ୍ତି ନାହିଁ । ନିରୋଳାରେ ମୋତେ କେବେ ଦେଖିଲେ କଅଣ କହିବେ କହିବେ ହୁଅନ୍ତି । ହାତ ଧରି ଅଟକାଇ ରଖିବାକୁ ଚେଷ୍ଟା କରନ୍ତି । ମୁଁ ବାଁରେଇ ହୋଇ, ନୋହିଲେ ହାତ ଟାଣିନେଇ ତାଙ୍କ ଆଗରୁ ଚାଲିଆସେ ବୋଉ ପାଖକୁ । ସେ ଆସନ୍ତି ପଛେ ପଛେ । ବୋଉ ଆଗରେ ମୋର ପୂର୍ବ ସ୍ୱାଧୀନତା ଫେରିଆସେ ।

ଦିନେ, ବୋଉ ବାଡ଼ିଆଡ଼େ ଅଛି, ହଠାତ୍ ସେ ଆସି ମୋ ଆଗରେ ଠିଆ ହେଲେ । ଗୁଈ ନେଉଟ ବେଳ । ଘରଭିତରୁ ବାହାରିଯିବାକୁ ଉପାୟ ରହିଲା ନାହିଁ ।

ପଚାରିଲେ, ଗୀତା, ତୁ ଆଜିକାଲି ମୋତେ ଭଲ ପାଉନାହୁଁ ?

ଛାତିରୁ ନିଆଁ ଖସିପଡ଼ିଲା । କହିଲି, କିପରି ଜାଣିଲ ?

ସେ ମୁହଁ ମଉଳାଇ କହିଲେ, ଚୋର ଢଙ୍ଗରୁ ।

ମୁଁ ଟିକଏ ଚୁପ ରହି କହିଲି, ମୋର ଢଙ୍ଗରେ କିଛି ବଦଳା ଦେଖୁଛ ?

ପଚାରୁଛୁ—ସତେ ଯେପରି କିଛି ଜାଣୁନାହୁଁ !

ମୁଁ ତ କିଛି ଜାଣେ ନାହିଁ କହି ହସିଲି ।

ସେ ମୋର ହାତ ଧରିଲେ । ହାତ ଖସାଇନେଲି ।

ସେ କହିଲେ, ଏଇ ତ ଚୋର ଢଙ୍ଗ ।

ସଫା ସଫା କହିଦେଲି, ମୋ ଦେହରେ ହାତ ଦିଅନାହିଁ ବାମ ଭାଇ ।

ପଚାରିଲେ, କଅଣ ଦୋଷ ହେଲା ? ମୁଁ ଯେ ତୋତେ ବାହା ହେବି ଲୋ, ଗୀତା ।

ଲାଜରେ ମୁଣ୍ଡ ନୁଆଁଇଲି । କହିଲି ସାହସରେ, ତା ଆଗରୁ ପରଝିଅ ଦେହରେ ହାତ ଦେବାର ଅଧିକାର ତମର ନାହିଁ ।

ସେ ଅବାକ୍ ହୋଇ କଅଣ ଭାବିଲେ । ମୁଁ ଘରଭିତରୁ ଛୁଟିଗଲି ବାଡ଼ିଆଡ଼କୁ । ଆଗ୍ରହରେ କହିଉଠିଲି, ବୋଉ ଲୋ, ବାମ ଭାଇ ଆସିଛନ୍ତି ।

ତିନୋଟି ବର୍ଷ କଟିଗଲା । ଆମର ଦରିଦ୍ର ଜୀବନ ଉପରେ ସୁଖଦୁଃଖର କେତେ ଢେଉ ଖେଳିଗଲା । ତଥାପି ଦାମଭାଇଙ୍କର ଆସିବାର ଇଚ୍ଛା ନ ଥାଏ । କି ମୋହରେ ଯେ ସେ ଆସନ୍ତି କେବଳ ତାଙ୍କୁହିଁ ଜଣା । ଦେଖାହେଲେ ଆଗ୍ରହରେ ପାନ ଦି ଖଣ୍ଡି ଭାଙ୍ଗିଦେବା ଛଡ଼ା, ହସିକରି ପଦେ ଅଧେ ଏଣୁ ତେଣୁ କହିବା ଛଡ଼ା, ତାଙ୍କୁ କେବେହେଲେ ଅଧିକ ପ୍ରଶ୍ରୟ ଦେଇନାହିଁ । କିନ୍ତୁ, ସେ ଯେପରି ଅନ୍ୟ କଅଣ ଚାହାଁନ୍ତି ।

ତାଙ୍କର ଅନ୍ୟଠାରେ ବାହାଘର ସ୍ଥିର ହେଲା । ମୋତେ କେଜାଣି କାହିଁକି ଖରାପ ଲାଗିଥିଲା । ତାଙ୍କୁ ଯେ ମୁଁ ବାହାହେବି ବୋଲି କଳ୍ପନା କରିଥିଲି ବା ଆଶା କରିଥିଲି ଏପରି ନୁହେଁ । ତାଙ୍କୁ ଯଦି ମୁଁ ବାହା ହୋଇଥାନ୍ତି ଜୀବନରେ ସୁଖୀ କି ଦୁଃଖୀ କଅଣ ହୋଇଥାନ୍ତି ସେ କଥା ମୁଁ କହି ପାରୁନାହିଁ । କେବେ ଭାବି ନ ଥିଲି । ମୋର ବାହାଘର ପାଇଁ ଯେଉଁମାନେ ବ୍ୟସ୍ତ ଓ ଦାୟୀ ହୁଏତ ସେମାନେ କଅଣ ଭାବିଥିବେ; କିନ୍ତୁ ତଥାପି ଯେଉଁଦିନ ଦାମଭାଇଙ୍କର ବାହା, ସେଦିନ ମୋର ମନ କେଉଁଠି ଲାଗିଲା ନାହିଁ । ଗୁଡ଼ିଭିତରେ କୋହ ଭୁହାଇ ଭୁହାଇ ଉଠିଲା । ଆଖି ଥରକୁ ଥର ଲୁହରେ ଭରିଗଲା । ସେ ଦିନର ସେହି ସଞ୍ଜବେଳର କଥାଟି ଆସି ମନରେ ପଡ଼ିଲା ।

ନିଜକୁ ନିଜେ ପଚାରିଲି, କାହିଁକି ? ପିଲାଦିନର ଖେଳ କୌତୁକ, ସାଙ୍ଗ ମେଳ, ହାସ ପରିହାସ ବା ପରସ୍ପର ପ୍ରତି ଆକର୍ଷଣରେ ମୋହ ଉତ୍ତେଜନା ପାଇଁ ଯେଉଁ ଦୁନିଆଁ ଭୁଲି ଲାଜ-ସଂକୋଚହୀନ ମିଳାମିଶା, ତହିଁରେ ବିବାହର ଚିନ୍ତା ତ କେବେ

ଆସି ନ ଥିଲି । ପରସ୍ପର ସାନ୍ନିଧ ଭଲ ଲାଗେ, ମନରେ ଆନନ୍ଦ ଆଣେ, ସେତିକ ପାଇଁ ସିନା ଆମେ ପାଗଳ ! କିନ୍ତୁ, ନା, ମନର କେଉଁ ଅନ୍ଧାର କୋଣରେ ଧକ ଧକ ଜଳୁଥିଲି ଘାପଟିଏ, କେବଠୁଁ କେଜାଣି, ଅଚ୍ଚ ଆପଣାର, ଅଚ୍ଚ ଚ୍ଛିରୁଣା, ଜଣାଶୁଣା । ସେହି ବାଟ ଦେଇ କେତେ ଭାବନା ଚାଲିଯାଇଛି, ନଡ଼ଦିନଆଁ ଆଲୁଅଟିର ଦେଖଣା ବାଟରେ, କେବେ କେହି ତା ଆଡ଼କୁ ମୁଣ୍ଡ ଟେକ ଚାହିଁ-ନାହିଁ । କିନ୍ତୁ ସେଉଁଦିନ ଘାପଟି ଲିଭିଗଲା, ଲିଭିଗଲା ଚିରଦିନ ପାଇଁ, ଅନ୍ଧାର ହୋଇଗଲା ମନର ଭାବନା ।

ବାହାଘର ପରେ କେତେଦିନଯାଏ ଆମ ଘରକୁ ଯିବା ଆସିବା ବନ୍ଦ କରି ଦେଇଥିଲେ । ତା ପରେ ସେ ଆସିଲେ ବୋଉ ସଙ୍ଗେ ପଦେ ଅଧେ କଥା କହି ପାନ ଦି ଖଣ୍ଡି ନେଇ ଠିଆ ଠିଆ ଚାଲିଯାଆନ୍ତି । ମୋ ମୁହଁକୁ ଚାହିଁବାକୁ ବା ମୋ ସଙ୍ଗେ କଥା କହିବାକୁ ତାଙ୍କୁ ଲାଜ ମାଡ଼େ । ଧୀରେ ଧୀରେ ଏ ସଂକୋଚ ବି ଭାଙ୍ଗିଗଲା । ମୋତେ ନିବୋଳାରେ ପାଇଲେ କଅଣ ସେପରି କହିବେ, ସେଥିପାଇଁ ସେ କେତେ ଇସାରା ଦିଅନ୍ତି, ପ୍ରକାରାନ୍ତରରେ ବୁଝାଇ କହନ୍ତି ।

ସବୁ ବୁଝି ନ ବୁଝି ଛଳନା କରେ ।

ଏତେଦିନକେ ଆଜ ସେ ମୋତେ ନିବୋଳାରେ ଦେଖିଥିଲେ । କେତେ କଅଣ କହିବେ ବୋଲି ଇଚ୍ଛା କରିଥିଲେ । ସେ ସୁଯୋଗ ତାଙ୍କୁ ଦେଇନାହିଁ ।

ଠିକ୍ କରିଛି କି ଭୁଲ କରିଛି, ଭାବି ସ୍ଥିର କରିପାରିନି ନାହିଁ । ତାଙ୍କ ସଙ୍ଗେ ମୋର ଆଉ କି ସମ୍ବନ୍ଧ ? ପିଲାଦିନୁଁ ଭାଇ ବୋଲି ଡାକି ଆସିଛି, ଚିରଦିନ ସେ ମୋର ଭାଇ ହୋଇ

ରହିବେ । ଘରର ଯେତିକ ସମ୍ମାନ, ଯେତିକ ସ୍ନେହ ମମତା ପ୍ରାପ୍ୟ ସେତିକ ତାଙ୍କୁ ଦେବାରେ ମୁଁ ତ୍ରୁଟୀ କରିନାହିଁ, କରିବ ନାହିଁ ମଧ୍ୟ । ତାଙ୍କର ଭାବନା, ତାଙ୍କର ଉଦ୍ଦେଶ୍ୟ ଘେନି ସେ ରହନ୍ତୁ; ସେଥିରେ ମୋର ଯାଏ ଆସେ କଅଣ ?

ବୋଉ ନଲଂଠଣ ନେଇ ଏ ଘରକୁ ଆସିଲା । 'ଡାକିଲା, ଗୀତା, ଉଠ୍ ମା । ରାତି ପହ୍ରା ଢେର ହେଉଛି । ଉଠ୍, ଗଣ୍ଡାଏ ଖାଇଦେଇ ଆ ଶୋଇବୁ । ମୁଁ ଉଠି ବସିଲି ।

ଏକୁଟିଆ ଶୋଇ କଅଣ ଏଣୁତେଣୁ ଭାବୁଛୁ ?

ପଚାରିଲା, ନିଦ ହୋଇନାହିଁ?

ଠିଆ ହେଲି । ଗୋଟାଏ କିଛି କହିବାକୁ ତ ହେବ । କହିଲି, ନିଦ ହେଲା ନାହିଁ । ଭାବୁଥିଲି, ବାପାଙ୍କ କଥା । ବିଦେଶରେ ପଡ଼ିଛନ୍ତି, ଦେହ ଖରାପ,—

କହିଲା, ଠାକୁର ଅଛନ୍ତି ମା । ଗରିବର ସେହି ଏକା ସାହା ।

—ନଅ—

ଚିଠିରେ କଅଣ ଲେଖା ହୋଇଛି ଜାଣିବାକୁ ବୋଉ ଉଦ୍‌ବ୍ୟଗ୍ର ହୋଇ ଉଠିଲା । ସକାଳୁ ମନେ ମନେ ଯେପରି କାହାକୁ ଖୋଜୁଥାଏ । ବାରିଆଡ଼କୁ ଯାଇ ବନ୍ଧ ଉପରକୁ ଅନାଇ ଆସେ । ହାମ ଖାଇ ଆସିବେ ବୋଲି କହିଥିଲେ, କାଳେ ଆସୁଥିବେ । ହତାଶ ହୋଇ ଫେରେ । ଦାଣ୍ଡ ଗୋହିରୀକୁ ଚାହିଁ ଦେଇ ମନ ମାରି ଫେରି ଆସେ ।

କଅଁଳ ଖରା ନୂଆଁଣିଆ ଗୃହଘରର ମଥାନ ଛୁଇଁ ଦୁଆରକୁ ଆସିଲା । କାକରଭିଜା ଗଛପତ୍ରରେ ସୁନେଲି ଖରାର ପରଶ ଲାଗି ଝକ୍ ଝକ୍ ଦିଶୁଥାଏ । କହିଲି, ବୋଉ, ନଈକୁ ଗାଧୋଇ ଯିବା ନାହିଁ କି ? ଖରା ପଡ଼ିଲାଣି’ ଡେରି ହେବ ।

ବୋଉ ଅନ୍ୟମନସ୍କ ହୋଇ କହିଲା, ଆଜି କାହିଁକି ବଡ଼ ହେମାଳିଆ ଲାଗୁଛି । ଥଣ୍ଡା ବାଲିରେ ଗୋଡ଼ ଜଳପା ହୋଇ ମାରିଯିବ । କୂଅ ପାଣି ଉଷୁମ ହୋଇଛି । ମୁଁ ଏଇଠି ଗାଧୋଇବ ।

ରାଧା ପଇ ଆସି ଡାକେ ?

ମୋ କଥା ମୋ ତୁଣ୍ଡରେ ଅଛି, ବାଉ ବାଟେ ରାଧା ଆସି ପହଞ୍ଚିଲା ।

କହିଲି, କେତେ ଆଇଷ ଲୋ, ତୋଓର କଥା ମୋ ତୁଣ୍ଡରେ ଅଛି, ତୁ ଆସି ପହଞ୍ଚିଲୁ ।

ରାଧା କାହାର ଦୁଃଖରେ ନ ଥାଏ କି ସୁଖରେ ନ ଥାଏ । ନିଜର ଶ୍ରେଷ୍ଠ କୁଡ଼ିଆଟିରେ ସେ ତା’ର ପଡ଼ିଥାଏ । ପାଞ୍ଚ ଘରେ ସାତ ପାଇଟି କରେ, ବୋଲହାକ କରି ସମସ୍ତଙ୍କୁ ଭଜେଇ ରଖିଥାଏ । କେଉଁଦିନ କାହା ଘରେ ଖାଏ ତାର ଠିକଣା ନାହିଁ । ପଇସେ ଅଧଲେ ଯିଏ ଦିଏ ସେ ତାକୁ ସାଇତି ରଖେ । ପିଲାପିଚିକା କେହି ନାହାନ୍ତି । ଏଇ ଗାଁରେ ଜନ୍ମ, ଏଇ ଗାଁରେ ବାହା । ସମସ୍ତେ ମରିହଜି ଗଲେ । ଏକା ସେ ତାର ନାବ ଚଳାଇଛି । ପଇଁଚାଳିଶ ବର୍ଷ ହେଲା । ଦେଖିବାକୁ ସୁନ୍ଦର ନ ହେଲେ ବି କେହି କହିବ ନାହିଁ କୁତ୍ସିତ । ଦେହରେ ବଳ ଅଛି, କହନ୍ତି ଦୁଇଟା ମଣିଷର ବଳ ।

ସେ କହିଲା, ଆସ ସାନ୍ତାଣୀ, ଆସ ଦେଖିବ, ଗାଧୋଇ ଯିବ । କେତେ ମାଇପେ ନଈକୂଳ ଓସ୍ତମୂଳେ ଗୁହ୍ଳ ରହିଛନ୍ତି ।

ବୋଉ ମନା କଲା । ଗାମୁଛା ଖଣ୍ଡି ଧରି ମୁଁ ତା ସଙ୍ଗେ ବାହାରିଲି ।

ସତକୁ ସତ ଓସ୍ତମୂଳେ କେତେ ମାଇପେ, ବୁଢ଼ୀ, ବୋହୂ, ଝିଅ । ତାଙ୍କର ସଙ୍ଗେ ମିଶି ନଈବାଲିକୁ ଗଲି । ଗଦାଏ ବାଲି, ସେ ପାଖେ ଯାଇ ପାଣି ।

ବୋଉ କଥା କଏ ପଚାରିଲା । ରାଧା ମନା କଲାରୁ ଆଶ୍ଚର୍ଯ୍ୟ ହୋଇ କହିଲା, ଏଁ, ଆଇଲା ନାହିଁ ? ବଡ଼ିଲା ଝିଅଟାକୁ ଏକା ତୋ ସାଙ୍ଗେ ଛାଡ଼ିଦେଲା ?

ଥାପଡ଼ ମାଇଲା ପରି ମତେ ଲାଗିଲା । ରାଧା କଥାକୁ ଟାଳାଇ ନେଇ କହିଲା, ସେ କଣ ଛାଡ଼ୁଥାନ୍ତେ ଗୀତାକୁ ? ଶୁଣିଲେ, ତମେ ହେଇକା ଆସିଛ । ତମମାନଙ୍କ ଠୁଁ କଅଣ ଗୀତାବୋଉ ବଡ଼ ? ଆଉ କିଛି ପ୍ରତିବାଦ ହେଲା ନାହିଁ । ନିଜେ ସାବଧାନ ହେବାକୁ ମୁଣ୍ଡରେ ଓଢ଼ଣା ଦେଇ ଅରୁର ପାଖେ ପାଖେ ଚାଲିଲି ।

ଅରୁନ୍ଧତୀ ନତେଇ ଦାଦାଙ୍କ ଝିଅ—ସମବୟସୀ । ପିଲାଦିନର ସାଙ୍ଗ । ଭଲ ଟିଏ । ଦି ବର୍ଷ ହେବ ବାହା । ପୁଆଣି ହୋଇଆସିଛି । ଦେଇ ନେଇ ବାହା କରିଛନ୍ତି । ଭଲ ଘର, ଭଲ ବର ପାଇଛି ।

ଲୁଚି ଲୁଚି କରି ତା ସଙ୍ଗେ ଦି ଚାରି ପଦ କଥାଭାଷା ହେଉଛି, ବୟସ ବେଶି ନ ହେଲେ ବି ଆଣ୍ଠ ନେଖା ହେବ ଜଣେ, ଶୁଣେଇଁ କହିଲା, ଶିଖିଲେ ମା ଶିଖ୍, ନୂଆ ଗେରସ୍ତ ପାଇଛ ଅରୁଟି । କେତେ ନୂଆ କଥା ଜାଣି ଆସିଥିବ, ପଚାର ସବୁ ବୁଝି ନେ ।

ମୋର ପାଟି ବନ୍ଦ ହୋଇଗଲା । ଏଟା କଥା ହେଲେ ବ ସତେ କି ମୋର ଦେହରେ ଛୁରି ଚଳିଗଲା । ଗାଁ ଗଣ୍ଡାରେ ଘର କରି ଝିଅ ବୋହୂଙ୍କର ତୁଣ୍ଡ ଖୋଲିବାର ଅଧିକାର ନାହିଁ । ଯିଏ ଯାହା କହୁ, ଶୁଣି ଚୁପ ରହିବାକୁ ହେବ । ଅନୁତାପ କଲି । ବୋଉର କଥା ନ ମାନି ମୁଁ ଆସିଲି କାହିଁକି ?

ରାଧା କଅଣ ଭାବୁଥିଲା । ହଠାତ୍ କହିଉଠିଲା, ଆଈଙ୍କର ମନରେ କଷ୍ଟ ଲାଗେ ଗୀତା, ତାଙ୍କୁ ନ ବୁଝି ଅରୁଣ ବୁଝୁଛି କଅଣ ? ଅରୁ ସିନା ଜଣକର କଥା କହିବ, ଗୋଟିଏ ଘାଟର ପାଣି ଚାଖିଛୁ; ଆଈ ତ ଆମର—

କଥାଟା ଠିକଣା ଜାଗାରେ ଅଧା ରଖିଦେଲା । ଆଈମାନେ ହସିଉଠିଲେ । ଆଈ କଥାଟି ବାଗେଇ ନେଲେ ।

ରାଧାକୁ ମନେ ମନେ ପ୍ରଶଂସା କଲି । ବାପୁ ଡାକ୍ତରଙ୍କ ଝିଅ ରେଣୁ, ଖୁସିରେ ମତେ କୁଣ୍ଢାଇ ପକାଇ କହିଲା, ଦେଖିଲୁ କେମିତି ଜବତ୍ କଲା ଆଈଙ୍କି ?

ମୁଁ ସାମାନ୍ୟ ହସିଲି । ହସିଲି ଭିନ୍ନ କାରଣରୁ । ରେଣୁଟା କାଲିକାର ପିଲା । ମୋଠୁଁ ଆଗରେ ଲଙ୍ଗଳା । ତେର ବର୍ଷ ଟପିଛି କି ନାହିଁ । ସେ ବି ରାଧା କଥାର ମର୍ମ ବୁଝିଲା । ମୁଁ ଚୁପ ରହିଲି । ବେଶି କଥାବାର୍ତ୍ତା କଲିନାହିଁ ।

ଗାଧୁଆ ଘାଟରେ ମାଇପି ମହଲରେ କେତେ ବିଷୟରେ ଚର୍ଚ୍ଚା ହେଲା । ବାର ଘର ଚିନ୍ତା, ବାର ଘର କଥା । ମୁଁ କାନ ଡେରି ରହୁଥାଏ । ମୋ କଥା କିଏ କଅଣ ପକାଇଲା କି ?

କମଳା ଭାଇଙ୍କ ସ୍ତ୍ରୀ, କାନ ଯାଏ ତାଙ୍କ ପାଟି ଚିରା । ତାଙ୍କର ଡମା ଡମା ଆଖିରେ ପଡ଼ିଗଲି ମୁଁ । ବାଳିଆ ମାଙ୍କ ପରି

ପାଟି ପାକୁ ପାକୁ କରି, କଳାମୁହଁରେ ଦୁ ପାଟି ଧଳା ଦାନ୍ତ ଦେଖାଇ ମୋଉଙ୍କ ଆଡ଼କୁ କଣେଇ ଚାହିଁଲେ । ପାଖ ମାଇପିଟିର କାନ ପାଖରେ କହିଲେ, ଗୀତାବୋଉ ଖୁଡ଼ୀ ଛାତିରେ ପଥର ଲଦି ଆଚଯାତ ହେଉଛି । ଝିଅ, ଘିଅ । ଦେଖିଲୁ, ଗୀତା କଅଣ ଅଭିଆଡ଼ୀ ଝିଅ ପରି ଦିଶୁଛି ? ଆର ଜଣକ ମୁହଁ ବୁଲାଇ ମୋ ଆଡ଼କୁ ଚାହିଁଲା । କିଛି କହିଲା ନାହିଁ ।

ସେ ପୁଣି କହିଲେ, କାହିଁକି ଆଉ ରଖି ବସିଛନ୍ତି କେଜାଣି ? ନାଁ ନନ୍ଦା ଗାଁ ନନ୍ଦା । ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇଲେ କି ଲାଭ ? ନିଜ ଶକ୍ତିକୁ ଚାହିଁ ମୂଳଆ ମୁଣ୍ଡ ଦେଖି ବୋଝ ଉଠାଇଲେ ସିନା ହୁଏ । ବେଳ ବୟସ କଣ ଆସୁଛି ଝିଅଟାର ?

ସେହି ନଈର ଅଥଳ ପାଣିରେ ବୁଡ଼ି ମରିବାକୁ ମନ ହେଲା । ଆଖିରୁ ମୋର ଲୁହ ଗଡ଼ିପଡ଼ିଲା ।

ରୁକ୍ଷ ସ୍ୱରରେ ରାଧା କହିଲା, ଆଜି ଯଦି ତା ବୋଉ ଆସି ଥାନ୍ତା ଲେ, ତୋ ପାଟି ଦି ଫାଳ ଆହୁରି ଦୁଖଣ୍ଡେ ଚିରି ଦେଇଥାନ୍ତା । ମନେ କରିଛୁ, ସେ ଏକୁଟିଆ ଆସିଛି ବୋଲି ଯାହା ଇଚ୍ଛା ତାହା କହିପିବୁ । ସେ କଥା ଭାବିବୁ ନାହିଁ । ରାଧା ଯେତିକି ଭଲ ସେତିକି ମନ୍ଦ । ଯଦି ପୁରାଣ ଖୋଲି ବସିବ ଏଇ ନଈରେ ବୁଡ଼ି ମରିବାକୁ ତୋର ବା'ର ସମ୍ଭବ ନାହିଁ । ଭୁଲିଗଲୁ କାଲି, କମଳା ପରି ସାତଦିନ ଯାଏ ଘରେ ପଶି ନ ଥିଲା । କାହିଁକି ଟିକିଏ ମନେ କଲୁ ? ମନେ ପଡ଼ୁନାହିଁ ? ତମ ଗାଁର କଥା ଗୋହିରି ପାଖେ ଆଜି ବି ନିଶୁନ ଅନ୍ଧାର ରାତିରେ କଅଁଳା ପିଲାର କୁଆଁ କୁଆଁ ଶୁଣି ଦମ୍ଭିଲା ଲୋକର ଛାତି ଥରଉଠେ ।

ସମସ୍ତେ ରାଧା ଆଡ଼କୁ ଚାହିଁଲେ । ରାଧା ରାଗିଛି । ସେ ରାଗେ ନାହିଁ ସହଜରେ । ରାଗିଲେ ତାକୁ ତିନିପୁର ଅନ୍ଧାର ଦିଶେ । କଅଣ କହେ ତା'ର ବାଇସ ରହେ ନାହିଁ । କେହି କିଛି କହିଲେ ନାହିଁ । ବିମଳା ଭାଇଙ୍କ ସ୍ତ୍ରୀ ଚୁପ ହୋଇ ରହିଲେ ।

ମୁଁ ଲୁଗା ପାଲଟି ନଈକୂଳରେ ଠିଆ ହୋଇ ଉପରେ ଗୋଟାଗୁଏଁ ଥରୁଥାଏ । ମୋ ପାଖରେ ରେଣୁ ଓ ଅରୁ ଠିଆ ହୋଇଥାନ୍ତି ।

ଅରୁ କହିଲା, ଗୀତା ଅପା, ଆଗରେ ଯିବା ଚାଲ । ସେମାନେ ପଛରେ ଆସୁଥାନ୍ତୁ ।

ଆମେ ତିନିହେଁ ଚାଲିଆସିଲୁ । ଖରା ଟାଣ ହୋଇ ଆସିଥାଏ ।

—ଦଶ—

କିଏ କଅଣ ଭାବୁଥାଏ କେଜାଣି, ମୁଁ ଭାବୁଥାଏ ମୋ ନିଜ ଦୁର୍ଭାଗ୍ୟର କଥା । ନରାଙ୍ଗ ଗାଁରେ ଏତେ ଝିଅ ଥିଲେ, ମୋ ପରି ହତହତା କେହି ହୋଇନାହାଁ । ମୋଠୁଁ ସାନ ଝିଅମାନେ ପରଘରକୁ ଯାଇ ଭାଗ୍ୟ ଆଦର ସୁଖେ ଦୁଃଖେ ସଂସାର କଲେଣି । ମୋ ପରି ଡହଗଞ୍ଜିଆ ଜୀବନ କାହାର ଅଛି ?

ଅରୁନ୍ଧତୀ ମୋଠାରୁ ଛ ମାସ ସାନ । ଦୁଇ ବର୍ଷ ସଂସାର କରି ମନଖୁସିରେ ପୁଅଟିଏ ହୋଇ ଆସିଛି । ନିରୂପମା, ଗୋକୁଳ-ଭାଇଙ୍କ ଝିଅ, ମୋଠାରୁ ସାଙ୍ଗର । ଛ ବର୍ଷ ବୋହୂପଣିଆ କରି କୋଳରେ ଚାରି ମାସର ପୁଅ ଧରି ଆସିଛି । ଗାଁରେ ପାଞ୍ଚଟା

ବୋଉ ଆସିଲେଣି । ସେମାନେ ବୟସରେ ମୋଠୁ ସାନ ହେବେ ।

ଲୋକେ ମୋତେ ବାର କଥା କହିବେ, ନିନ୍ଦା କରିବେ, ଏଥିରେ ସନ୍ଦେହ କଅଣ ଅଛି ? କାହା ପାଟିରେ କିଏ ହାତ ଦେବ ? କିଏ କାଳେ କଅଣ କହିଦେବ, ସେଥି ଲାଜରେ ଦୁଇ ବର୍ଷ ହେଲା କାହାରି ଘରକୁ ବୁଲି ଚାଲି ଯାଏ ନାହିଁ ।

ମନକୁ ମନ ବୁଝାଏ, ମୋର ବାହାଘର ତ ମୋରି ହାତରେ ନାହିଁ । ଯେଉଁମାନଙ୍କ ହାତରେ ଅଛି ସେମାନେ କରିବେ କଅଣ ? ସବୁ ଚେଷ୍ଟା ଗୋଟାଏ ଆଡ଼େ,ଭାଗ୍ୟ ଗୋଟାଏ ଆଡ଼େ। ଲୋକେ କଅଣ ଏହି କଥା ବୁଝିପାରନ୍ତି ନାହିଁ ? ଦେଖାଇ ଶୁଣାଇଁ ଥଟ୍ଟା କରନ୍ତି, ପରିହାସ କରନ୍ତି । ମହନ ଜେଠାଙ୍କ ପରି ଲୋକ, ସେଦିନ ଆମ ଘରକୁ ଆସି ଶୁଣାଇଁ ଶୁଣାଇଁ ବୋଉକୁ କହିଗଲେ, ଝିଅକୁ ଲେଖିଦିଅ ବୋହୂ, ଏଣିକି ଆଉ ଶୋଭା ପାଉନି । ଯେଉଁଠି ହେଲେ ଏହି ମାଘରେ ନିମିତ୍ୟ ଉଠାଇଦେଉ । ଭଲମନ୍ଦ ବାରିବାକୁ ବେଳ କଅଣ ଆଉ ଆସୁଛି !

ଆଉ ଦିନେ, ନଟେଇ ଦାଦା ଆସି ବୋଉକୁ ଝିଙ୍କାସିଗଲେ, ତମେ କଣ ଏକା ଝିଅ ଜନମ କରିନାହଁ । ଯେଉଁ ପାତ୍ରଗୁଡ଼ିକଙ୍କୁ ନାପସନ୍ଦ କରି କାଟିଦେଲ, ସେମାନେ ଓଥିବା ରହିବେ ? ଭଗବାନ ସେମାନଙ୍କ ପାଇଁ ତ ପୁଣି ଖଞ୍ଜିଛି ! ନା, ନା, ଏ ସବୁ କଥା ଭଲ କରୁନା । ଥରେ ଭାବି ଦେଖ !

ବୋଉ କହିଲା, ନଟେଇ, ଗୀତା ଗାଈ ବାଛୁରି ନୁହେଁ ଯେ ଯାହାରି ପାରି ତା ଗୁହାଳରେ ବାନ୍ଧିଦେଇ ଆସିବି । ତମର ତ ଝିଅ ଅଛି; କହିଲ, ଯେଉଁସବୁ ପାତ୍ର ଆସିଲେ, ତମ ଅରୁକୁ ସେଠି

ଦେଇଥାନ୍ତ ? ଠାକୁରେ ଯିନା ଧନ ଦେଇନାହାନ୍ତି ନଚେତ୍, ମନ ଦେଇଛନ୍ତି ସଭିଙ୍କୁ ।

ଆଜ ଦିନେ ବାସୁଦାଦା ଆସି ଚେଇଁରେ କହିଲେ, ଶୁଣୁଛ ନୂଆବୋହୂ, ଏଇଟା ଭଲକଥା କରୁନାହଁ । ହାତରେ ଧନ ନାହିଁ ତ କେଉଁଠୁ ଦଶ ପଚାଶ ଆଣି ଝିଅଟାକୁ ଉଠାଇଦିଅ । ବାର ଗାଁରେ ନାଁ ପଡ଼ିବା ଭଲ ନୁହେଁ ।

ବୋଉ କହିଲା, ଯେଉଁମାନେ ନାଁ ପକାନ୍ତି ତାଙ୍କର ଝିଅ ଭଉଣୀ ନାହାନ୍ତି କି ?

ବୋଉର କଥା ଶୁଣିଲେ ମନରେ ସାହସ ଆସେ, ଦମ୍ଭ ଆସେ । ପରକ୍ଷଣରେ ମୁଣ୍ଡ ଗୋଳମାଳ ହୋଇଯାଏ । କେତେ ଜାଗାରୁ ଟିପଣା ଆସିଛି, ଟିପଣା ଗୁଡ଼ିଛି । କେଉଁଠି ମାଗୁଛନ୍ତି ଦିଆ ନିଆ ପାଇଁ, କେଉଁଠି ବା ଦୋବେଇ ବର ବୋଲି ।

ଠାଏ ତ ଠାଆର ବରପକ୍ଷ ଜଗତ୍ ଧରି ବସିଥିଲେ । ବାପା ମାଗି ଆସୁଥିଲେ, ବୋଉ ମାଗି ଦେଲା । ଟୋଟିଏ ପାତ୍ର ମିଚମିଚ କଳା । ବୋଉ ଜାଣେ, ମୁଁ କଳା ମଣିଷକୁ ନାକ ଟେକେ । ସେ କହିଲା, ଧନସମ୍ପତ୍ତିରୁ କଅଣ ମିଳିବ, ଝିଅ ଯଦି ମନ ଅଶାନ୍ତିରେ ଦିନ କାଟିବ ? ଆଉ ଜାଗାଟି, ପାତ୍ର କୁଆଡ଼େ ସୁନ୍ଦର, ହେଲେ, ଗଦାଏ ବୟସ । ମୋର ଦ୍ବିଗୁଣ । ଗଜ ମୂର୍ଖ । ଘରେ କିଛିନାହିଁ । ସେଠି ବି ଭାଙ୍ଗିଲା ।

ବେଳେବେଳେ ମୋ ଆଖି ଆଗରେ ଜଣକର ରୂପ ଉଭା ହୁଏ । ସେ ଗରିବ, ବେଶି ପାଠ ପଢ଼ି ନାହାନ୍ତି । ତଥାପି ମୋ ମନ କେଜାଣି କାହିଁକି ତାଙ୍କରି ଆଡ଼କୁ ଢଳିପଡ଼େ । ସୁନ୍ଦର, ସ୍ବାସ୍ଥ୍ୟବାନ୍ ଯୁବକ । ଶାନ୍ତ, ଧୀର । ହସ ହସ ମୁହଁ । ମିଠାକଥାରେ

ଗୁଣ୍ଡରେ ଅଜଣା ମୋହ ଜାଗି ଉଠେ । ତାଙ୍କର ସେବା କରିବାର ଅଧିକାର ଯଦି ଜୀବନରେ ପାଇପାରନ୍ତି ମୁଁ ଧନ୍ୟ ହୁଅନ୍ତି ।

ବାପା ବୋଉଙ୍କ ଆଖି ଏବେ ବି ଅଶ୍ରୁ ଉଛରେ । ତଳକୁ ଓହ୍ଲାଇନାହିଁ । ଯେ କାହିଁକି ଗରିବ ପିଲାଟିକୁ ଆଉ ଆଖିରେ ଚାହିଁବେ ? ମରିଯିବ ପଛେ କାହାରି ଆଗରେ ପାଟି ଖୋଲିବ ନାହିଁ । ଛି, ଝିଅ ଜନ୍ମପାଇ ବାହାଘର କଥାରେ ତୁଣ୍ଡ ଖୋଲିବାଠାରୁ ବଳି ଲାଜ କଥା ଆଉ କଅଣ ଅଛି ? ତାଙ୍କର ପୁଣି ବଡ଼ଘର ଅଛନ୍ତି ।

ଭାଇ ଦହେଁ ଆମ ଗାଁକୁ ଆସନ୍ତି । କମଳ ଭାଇଙ୍କ ବୋଉ ତାଙ୍କ ପିଉସୀ ଲେଖା । ଦୁଇବର୍ଷ ତଳେ କମଳାବୋଉ ବଡ଼ମା'ଙ୍କର ଶୁଦ୍ଧଘରକୁ ଆସି ଆମ ଗାଁରେ ଦି ଚାରିଦିନ୍ ରହିଥିଲେ । ସାନ ଭାଇ ଆସିଥିଲେ ଆମ ଘରକୁ ବୁଲି । ଦୁଇବର୍ଷ ତଳେ, ସଞ୍ଜବୁଢ଼େ ।

ସେହିଦିନଠୁ ଆମ ଗାଁକୁ ଯେବେ ସେ ଆସନ୍ତି, ଆମ ଘର-ଆଡ଼େ ବୁଲି ଆସନ୍ତି । ବୋଉ ତାଙ୍କୁ ସୁଖ ପାଏ ପୁତୁରା ଲେଖା କରେ । ବୋଉକୁ ସେ ଅପା ବୋଲି ଡାକନ୍ତି ।

ବନ୍ଧ ଉପରକୁ ଉଠିଲୁଁ । ଦେହର ଓଦା ଲୁଗା ବରଶୁଖା ହେଲଣି । ରେଣୁ କହିଲା, ଗୀତା ଅପା, ଏଥର ତୁ ଘରକୁ ଯା, ଆମେ ଦହେଁ ଏ ବାଟେ ଯାଉଛୁ ।

କହିଲି, ହଉ ଯା ରେଣୁ, ଭୁଲିବୁ ନାହିଁ, ମନେ କରୁଥିବୁ ।

ଖଞ୍ଜା ଭିତରକୁ ଆସି ଦେଖିଲି, ପିଣ୍ଡା ଉପରେ ସପ ପଡ଼ ହୋଇଛି । ଦାମଭାଇ ସେଇଠି ବସି କାଗଜ କଲମ ଧରି କଅଣ ଲେଖୁଛନ୍ତି । ବୋଉ ତାଙ୍କ ଆଗରେ ବସି ତନ୍ମୟ ହୋଇ ଚାହିଁ ରହିଛି । ମୁହଁ ପ୍ରଫୁଲ୍ଲ ଦେଖାଯାଉଛି ।

ଘଣ୍ଟାଏ ବୁଝିନେଲି । କିଛି ନ ଜାଣିଲି ପରି ଗୋଡ଼ ଚପି ଚପି ଘର ଭିତରକୁ ପଶି ଯାଉଥିଲି, ଦାମଭାଇ ମୁହଁ ଟେକି ଚାହିଁଲେ । ଲେଖା ବନ୍ଦକରି କହିଲେ, କି ଲୋ, ନଈରେ ପହଁରୁଥିଲୁ କି ?

ଉତ୍ତର ନ ଦେଇ ଘର ଭିତରକୁ ଗଲି ।

ଦାମଭାଇ କହିଲେ, ଚିଠି ଲେଖା ସରିଲା ଖୁଡ଼ୀ, ପଢ଼ି ଦେଉଛି ଶୁଣ ।

ପଢ଼ିଲେ—

—ତମ ଦେହ କଥା ଶୁଣି ଅତି ବ୍ୟସ୍ତ ଲାଗୁଛି । ଯତ୍ନମତ ଔଷଧ ଖାଇବ । ଘରକୁ ଟଙ୍କା ନ ଦେଲେ ନାହିଁ ।

ଗୀତାର ଟିପଣା ପଠାଇଲି । ତମ ଚିଠିରୁ ଯାହା ବୁଝିଲି, ପାଞ୍ଚଟି ମୋ ମନକୁ ପାଉଛି । ଗୀତାନାଖି ଏକା । ସବୁ ଦେବା ନେବା କଥା କେହି ଉଠାଏ, ଏକାଥରେ ନାସ୍ତି କରିବ ନାହିଁ । ଆମର ଘର, ଡ଼ିହ, ବାରି ଅଛି । ବଖରାଟିଏ ଘର ପାଇଁ ଥାନ ରଖି ଆଉ ସବୁ ବିକଦେବା—

ବୋଉ କହିଲା, ଚିଠିଟି ଆଜ ଯିବ କିପରି ?

ଦାମଭାଇ କହିଲେ, ଆଜ ଆମ ଲୋକ କଟକ ଯିବ । ତାଆର ହାତରେ ପଠାଇଦେବ ।

ବୋଉ ତାଙ୍କ ସଙ୍ଗେ ଆହୁରି କେତେ କଅଣ କଥାଭାଷା ହେଲା । ମୁଁ ଘୋଷଘରକୁ ଗଲି, ଶୁଣିପାରିଲି ନାହିଁ ।

ମନରେ କେତେ ଭାବନା ଆସି ପଶିଲା । ଝିଅ ଜନ୍ମକଲେ ଲୋକ କୁହୁଡ଼ି ପହଁରିବାକୁ ଆଶା କରେ । କଟକର ବିଧୂବାବୁ ମାଷ୍ଟରଙ୍କ ପୁଅ ପ୍ରବୋଧବାବୁ, ଆଉ ନାଗଙ୍କ ଗାଁର ମୁଁ ! ଆକାଶ କଇଁଆ ଶଳିକା ମାତ୍ର, ଯାହା ଏକାଠି ହେବାର ନୁହଁ । କେଉଁଠୁ କଅଣ ଶୁଣି ବାପା ହାଇରାଣ ହେଉଛନ୍ତି । ଶେଷକୁ ହତାଶ ହେବେ । ମନ ଭାଙ୍ଗିଯିବ ।

ବୋଉ ଆସି କହିଲା, ଗୀତା, ଜାଲଗୁଡ଼ା ଭୁସ୍ ଭୁସ୍ ଜଳୁଛି ।

ଦାମଭାଇ ରହସ୍ୟ କରି କହିଲେ, ଚୂଲି ଜଳାରେ କଅଣ ତାଆର ମନ ଅଛି ? ତାର ମନଧ୍ୟାନ ଆସି ଏଇ ଶଠିରେ ।

ନାଇଁରେ ପୁଅ, ବାହାଘର କଥା ପଡ଼ିଲେ ତା ମୁହଁ ଶୁଖିଯାଏ । ହ ଆଖିରୁ ଗଳ ଗଳ ଲୁହ ଝରିପଡ଼େ । ତାର ଇଚ୍ଛା, ସବୁଦିନେ ସେ ମୋଉରି ପାଖରେ ରହିବ, ପର ଘରକୁ ଯିବ ନାହିଁ ।

ଟିକଏ ରହି କହିଲା, ଗୀତା, ଯା ଭାଇକୁ ପାନ ଭାଙ୍ଗିଦେଇ ଆସିବୁ ।

କହିଲି, ତୁ ଯା ।

ବୋଉ କହିଲା, ତୋ ହାତର ପାନଭଙ୍ଗା ତାଙ୍କୁ ଭଲ ଲାଗେ। ସେଣ ପକାଇଥିଲୁ ବୋଲି ଆଜ ସକାଳୁ ଉଠି ସେ ଆସିଛନ୍ତି । କେତେ ତାଆର କେତେ ଶରଧା ଦେଖ ।

କେଡ଼େ ନବୋଧ ମୋର ସ୍ନେହମୟୀ ବୋଉ ! ବାହାର ଦେଖି ସେ ସହଜରେ ଭୁଲିଯାଏ । ଦୁନିଆଁରେ ସମସ୍ତଙ୍କ ଉପରେ ତାର ପୂର୍ଣ୍ଣ ବିଶ୍ୱାସ । ବିଶେଷତଃ, ଦାମଭାଇଙ୍କୁ ସେ ପୁଅପରି ମଣେ, ବିଶ୍ୱାସ କରେ । ଅତି ସରଳ, ଅତି ନିର୍ମଳ ତାର ମନ ।

କହିଲି ପାଟିକରି, ମୋଠି ଦାମଭାଇଙ୍କର ଶରଧା ନୁହେଁ ବୋଉ, ଯେଉଁ ନୂଆବୋହୂଙ୍କ ସେଣ ଦେଇଥିଲି ତାଙ୍କଠି ଶରଧା

—ବାଆର—

ଏ ଘରକୁ ପାନ ଭାଙ୍ଗିବାକୁ ଆସିଲି । ଦାମଭାଇ ମୋ ମୁହଁକୁ ଚାହିଁ ହସି ହସି କହିଲେ; ତୁ ଅତି ଦୁଷ୍ଟ, ଗୀତା ।

ଉତ୍ତର ନ ଦେଇ ପାନ ଭାଙ୍ଗି ବସିଲି । ସେ ମୋର ଆଗରେ ବସି ମୋ ମୁହଁକୁ ଚାହିଁ ରହିଲେ । ଅଡୁଆ ଲାଗିଲା । କହିଲି, ଦାମଭାଇ, ତମ ଘରକୁ ଅନେକ ଦିନ ହେଲା ଯାଇନାହିଁ । ନୂଆବୋହୂ ମୋ ଉପରେ ରାଗିଥିବେ ।

କହିଲେ ସେ ଦିନେ ତୋ କଥା ପଚାରୁଥିଲେ ।

ମୋତେ ଲାଜ ମାଡ଼ିଲା । ଭାବିଲି, ମୋ କଥା ପଚାରୁଥିଲେ, ଦାମଭାଇ କଅଣ କହିଥିବେ ?

ମୋର କପାଳରେ ହାତ ବୁଲାଇ ସେ କହିଲେ, ବାଲି ଲାଗିଛି । କାହାକୁ ମୁଣ୍ଡିଆ ମାରୁଥିଲୁକି ?

ବାଧା ନ ଦେଇ କହିଲି, ହଁ ଠାକୁରଙ୍କୁ ।
ପ୍ରବୋଧ ପାଇଁ ?

ଭୁନ ଭୁନ ଜହିଦେଲି, ନା, ତମର ପାଇଁ !

ସେ ଆବାକାବା ହୋଇ ମୋ ମୁହଁକୁ ଗୃହିଁଲେ । ବୋଉ ମାଠିଆଟି ଧରି ପାଣି ପାଇଁ ବାରି ଆଡ଼କୁ ଗଲା ।

ଦାମଭାଇ ଭଙ୍ଗାସ୍ୱରରେ କହିଲେ, ପରିହାସ କରୁଛୁ ଗୀତା ?

କହିଲି, ନାହିଁ ।

ସେ ମୋର ହାତ ଧରି କହିଲେ, ସତ କହୁଛୁ ?

କହିଲି, ବରାବର ସତ କହି ଆସିଛି । ତମେ ଶୁଣି ନା, କି ଶୁଣୁନା । ଠାକୁରଙ୍କୁ ଜଣାଉଥିଲି, ମୋ ଦାମଭାଇଙ୍କି ଭଲ ମନ, ଭଲ ବୁଦ୍ଧି ଦିଅ । ସେ ମୋ ନୂଆବୋହୂକୁ ଭଲ ପାଆନ୍ତୁ । ତାଙ୍କ ଆଖି ଆଉ କେଉଁଠି ନ ପଡୁ ।

ପାନ ଦିଖଣ୍ଡି ତାଙ୍କ ହାତରେ ଦେଇ ଉଠି ଠିଆ ହେଲି । ସେ ମଧ୍ୟ ଉଠିଲେ । ଦୀର୍ଘଶ୍ୱାସ ଛାଡ଼ି କହିଲେ, ଗୀତା !

ତାଙ୍କର ସେହି ପଦକ ଡ଼ାକଣରେ କେତେ କଠୋରତା ଭରି ରହିଥିଲା । ମୋ ଛାତି ଥରି ଉଠିଲା ।

ସେ ସେମିତି ରୁକ୍ଷ ସ୍ୱରରେ କହିଲେ, ଗୀତା ! ମଣିଷର ମନରେ ଆଘାତ ଦେବା ଭଲ ନୁହେଁ । ତୁ ମୋତେ ଘୃଣା କରୁ କି ଭଲ ପାଉ କେବେ ହେଲେ କହିନୁ । ମୁଁ ମଧ୍ୟ ବୁଝିପାରି ନ ଥିଲି । ଅନ୍ଧପରି ତୋ ପଛେ ପଛେ ଗୋଡ଼ାଉଥିଲି । ଗ୍ଭରିବର୍ଷ କଟିଲା

ପୁରା ସ୍ତ୍ରବତି ବର୍ଷ । ତୋ ମୁହଁରୁ ଷ୍ଟ୍ରିର ଜବାବ୍ ନ ପାଇ ଅନ୍ୟଠି ବିବାହ କରିବାକୁ ମୁଁ ବାଧ୍ୟ ହେଲି । ବାପା ମୋ ଅନୁରୋଧ ରଖିଲେ ନାହିଁ । ତାଙ୍କର ଅବାଧ୍ୟ ହେବାକୁ ମୋର ସାହସ ହେଲା ନାହିଁ । ତୁ ଯଦି ଠାଣ ହୋଇଥାନ୍ତୁ, ମତେ ଷ୍ଟ୍ରିର ଜବାବ ଦେଇଥାନ୍ତୁ ମୁଁ କାହାରି ବାଧା ମାନି ନ ଥାନ୍ତି ।

କହିଲି, ଅନ୍ୟକୁ ବିବାହ କରିଛ, ସେଥିପାଇଁ ତୁମକୁ କେହି ଦୋଷ ଦେଉନାହିଁ । ପିଲାଦିନର ଖେଳ କୌତୁକ କଥା ଭୁଲି ନିଶ୍ଚିନ୍ତରେ ସୁଖ ଆନନ୍ଦରେ ସଂସାର କର । ମନରେ କୁତ୍ସିତ ଲାଳସା ରଖି ଘରର ରୂପଧରି ଆସି ଆଜି ବି ସମସ୍ତଙ୍କ ଆଖିରେ ଧୂଳି ପକାଇବାକୁ ଚେଷ୍ଟା କରୁଛ । ତୁମେ ବଡଲୋକର ପୁଅ, ମୁଁ ଗରିବ ଝିଅ । ତା ବୋଲି ତୁମେ ସପନରେ ବି କେବେ ମନେ କରିବ ନାହିଁ ଯେ ଗୀତା ତାର ଇହକାଳ ପରକାଳ ଭୁଲି ଦୁହିଙ୍କ ମୁହଁରେ କାଳି ବୋଳିବ; କୁଳ, ଗ୍ରାମ ଓ ସମାଜକୁ ଲାଜ ଅପମାନର ପଙ୍କରେ ପାଣି ତାର ଏକମାତ୍ର ସମ୍ବଳ ମହତ୍ତ୍ୱକୁ ଅନ୍ଧ ପରି ତମରି ଗୋଡତଳେ ସମର୍ପିଦେବ ।

କଥାଗୁଡ଼ା ତରତର କରି କହିଦେଇ ପଦାକୁ ବାହାରି ଯାଉଥିଲି । ସେ ମୋର ହାତ ମୁଠାଇ ଧରି କହିଲେ, ଜାଣୁଛ, ତୋର ଭବିଷ୍ୟତ ମୋରି ହାତରେ !

ହାତ ଟାଣିନେଇ କହିଲି, ଜାଣେ, କାହାର ଭବିଷ୍ୟତ କାହାରି ହାତରେ ନାହିଁ । ଯାହାଙ୍କ ହାତରେ ଅଛି, ସେ ତମରି ବଡପଣ କି ଧମକକୁ ଅପେକ୍ଷା କରି ବସିନାହାନ୍ତି ।

ହାତ ଟାଣିନେଇ ଶୋଇଘରକୁ ପଶିଗଲି । ଦାମଭାଇ କହିଉଠିଲେ, ଆଚ୍ଛା, ଦେଖିବୁ ରହ, କାହା ହାତରେ ଅଛି ।

ବାରଆଡ଼ୁ ଶୁଭିଲା, ଦାମଭାଇ କହୁଛନ୍ତି, ଖଣ୍ଡ, ମୁଁ ଯାଉଛି । ଚିଠି ଓ ଟିପଣୀ ବୋଲଦାଦାଙ୍କ ପାଖକୁ ଆଜି ପଠାଇ-ଦେବ ।

ଚୂଲି ଭିତରକୁ ଜାଳ ଠେଲିଦେଇ ଆଖିରୁ ଲୁହ ପୋଛିଲି । ବୋଉ ଦୁଆରେ ଥାଇ ମୋତେ ଡାକିଲା । ମୁଁ ଜବାବ ଦେଲି, କଅଣ ବୋଉ ?

କହିଲା, ଆଲୋ, ରୋଷଘର ଧୂଆଁରେ ପଶିଛୁ କାହିଁକି ? ପଖାଳ ଗଣ୍ଡିଏ ବାଢ଼ି ଖାଇବସ୍ ! ବେଳସଞ୍ଜ ହେଲା !

ଦାମଭାଇ କହିଲେ, ଗୀତା, ଆଜି ଆମ ଘରଆଡ଼େ ବୁଲିଯିବୁ ଲୋ ।

କହିଲି ନୂଆବୋହୂଙ୍କ ଜନ୍ମଦିନ କି ?

ଉତ୍ତର ପାଇଲି ନାହିଁ ।

ଦାଣ୍ଡ କବାଟ ବାଟେ ଦାମଭାଇ ପଦାକୁ ବାହାରିଗଲେ ।

## —ତେଏର—

ଆଉ ଘରକୁ ଆସିଲି । ଝରକା ଖୋଲିଲି । ଖରା ପଡ଼ି ଘର ଭିତର ଉଜ୍ଜ୍ୱଳ ହେଲା । ଠଣା ଉପରୁ ପୁରୁଣା ଗପ ବହି ଆଣି ପଢ଼ି ବସିଲି । କେତେଥର ସେ ବହିଟି ପଢ଼ିଛି ପଢ଼ିବାକୁ ଆଉ ମନ ହେଲା ନାହିଁ । ଦାମଭାଇଙ୍କର ଧମକ, ତୋର ଭବିଷ୍ୟତ ମୋର ହାତରେ, ଘୁରେଇ ଘୁରେଇ ମୋ ମନରେ ଘାଣ୍ଟି ଚକଟି ହେଲା ।

ମୋ ଭବିଷ୍ୟତ ତାଙ୍କ ହାତରେ ! କାହାର ଭାଗ୍ୟକୁ କିଏ ହାତରେ ରଖିପାରେ ? ତଥାପି, ସେ ଏପରି କହିଲେ କେଉଁ ଉଦ୍ଦେଶ୍ୟରେ ? ପ୍ରବୋଧବାବୁଙ୍କ ବିଷୟରେ ଯେଉଁ ସମ୍ବନ୍ଧ ପଡ଼ୁଛି, ତାକୁ ସେ ଭାଙ୍ଗିଦେବେ ? ସେ ଜାଣନ୍ତି, ମୁଁ କୌଣସି ବିଷୟରେ କାହାକୁ କିଛି କହିପାରିବି ନାହିଁ । ପ୍ରବୋଧବାବୁଙ୍କ ପ୍ରସଙ୍ଗ କିଛି ନୂଆ ନୁହେଁ । କେତେ ଏପରି ଆସିଛି, କେତେ ଚିପଣା ପଡ଼ିଛି, ସବୁ ଭାଙ୍ଗିଯାଇଛି ।

ପୁଣି ଭାବିଲି, ମୋ ନାମରେ ଦୁର୍ନାମ ରଟାଇବେ ?

ଝାଳ ଲାଗିଲା । ଦୁର୍ନାମ ଯେ ଆମ ମାଇପି ଜାତିର କାଳ । ସତ ମିଛ କେହି ବୁଝନ୍ତି ନାହିଁ । ଦୁର୍ନାମ ଶୁଣିଲେ ବାହାଘର ପ୍ରସ୍ତାବ ଭାଙ୍ଗିଯାଏ । କେହି କାହାର କିଛି ଦେଖି ନ ଥାଏ । ତଥାପି, ଦୁର୍ନାମ ଉଠେ, ବେଦୀ ଉପରୁ ବର ଫେରିଯାଏ । ଝିଅମାନେ ବାଛନ୍ଦ ପଡ଼ିଯାଆନ୍ତି ।

ଏଇଥି ପାଇଁ କହନ୍ତି, ଝିଅ ବୋଝ ପଥର ବୋଝ । ଏଇଥି-ପାଇଁ ଝିଅର ମା ସମସ୍ତଙ୍କ ପାଖରେ ମୁଣ୍ଡ ନୁଆଁଇ ଚାଲେ । ସତେ କି ଝିଅ ଜନ୍ମ କରିବା ଦୋଷ, ଯାହାର କ୍ଷମା ନାହିଁ ।

ଦାମଭାଇଙ୍କ ଧମକକୁ ଡରି ତାଙ୍କୁ ପ୍ରଶ୍ରୟ ଦେବା ମୋ ପକ୍ଷରେ ଅସମ୍ଭବ । କୌଣସି ଝିଅ ପକ୍ଷରେ ଅସମ୍ଭବ । ଦୁର୍ନାମକୁ ଡରି ଲୋକ କୁକାର୍ଯ୍ୟ କୁସଙ୍ଗରୁ ଆଡ଼େଇ ରହେ ସିନା, ସେସବୁକୁ ପ୍ରଶ୍ରୟ ଦିଏ ନାହିଁ । ପ୍ରଶ୍ରୟ ଦେବା ଓଲମି ଛଡ଼ା ଆଉ କିଛି ନୁହେଁ ।

ମନରେ ଶକ୍ତି ଆସିଲା । ଯେଉଁ ଲୋକ ଏତେ ହୀନ, ଏତେ ସ୍ୱାର୍ଥପର, ତା ପାଖରୁ ଦୂରେଇ ରହିବା ଭଲ । ଧମକ ଦେଇ ସେ

ପତ୍ନିଙ୍କୁ ନଜର ପ୍ରବୃତ୍ତି ନାଆଁରେ ଝାସ ଦେଇ ନଜେ ବାହାଦୂର ନେବାକୁ ଗୃହେଁ ସେପର ନର୍ଲଜ୍ଜ ପାଖରୁ ଦୂରେଇ ରହିବା ଉଚତ ।

ପିଲବେଳ ଅଜାଣତରେ ଭଲମନ୍ଦ ବୁଝିବା ଆଗରୁ କେବେ କଏ କେଉଁଠି କପର ଟିକଏ ଭୁଲ କରବସେ । ସେଥିପାଇଁ ଅନ୍ୟମାନେ ଦାୟୀ । ବୟସ ହେଲେ, ଭଲ ମନ୍ଦ ବୁଝିବାର ଜ୍ଞାନ ଆସିଲେ ଅତୀତର କେଉଁ ଅସାବଧାନ ବେଳର ଭ୍ରମ ପାଇଁ ମଣିଷ ଅନୁତାପ କରେ । ଆଉ ଯେମିତ ପଙ୍କକୁ ଗୋଡ ନ ଯିବ ସେଥିପାଇଁ ସେ ସତର୍କ ହୁଏ । କେବେ ଟିକଏ ଭୁଲ ହୋଇଥିଲ ବୋଲ ତାଆର ଉପରେ ଜାଣି ଜାଣି କଅଣ ପୁଣି କାଦୁଅକୁ ଗୋଡ ବଢ଼ାଇବ ?

ମନ ନାହିଁ ନାହିଁ କର ଉଠିଲ । କଅଣ କ ମୋର ଭୁଲ ? ଟେଲ ଟିକଏ କରବାର ଆଗ୍ରହକୁ ପ୍ରଶ୍ରୟ ଦେଇ ତାଙ୍କର ଦେହକୁ ଆଉଜ ମୁହଁ ଦେଖାଇଥିଲ । ସେ ଆଲିଙ୍ଗନ କରଥିଲେ । ଉତ୍ତେଜିତ ହୋଇ ମୋତେ ଟେଲ କରଥିଲେ । ଏଇ ତ ? ଏଇଥିପାଇଁ ତାଙ୍କର ମନରେ ଆବିଳ ଧାରଣା ଧର ସେ ରହନ୍ତୁ, ଦୂରେଇ ରହନ୍ତୁ । ସେ ବିବାହିତ । ତାଙ୍କର ସବୁ ସ୍ନେହ ସରାଗ ତାଙ୍କର ନବବଧୂ ଉପରେ ସେ ଅଜାଡ଼ି ଦେଲେ ଦୁହେଁ ସୁଖୀ ହେବେ । ଲୁଚ୍ଛଇ ଲୁଚ୍ଛଇ ମୋ ପାଖରେ ତାଙ୍କ ନର୍ଲଜ୍ଜ ପ୍ରେମ ପ୍ରକାଶ କର ମୋର ସର୍ବନାଶ କରବାର ତାଙ୍କର କୌଣସି ଅଧିକାର ନାହିଁ ।

ସ୍ଥିର କଲି, ଯିଏ ଯାହା ଭାବୁ, ଦାମଭାଇଙ୍କ ଆଗକୁ ଆଉ ଯିବ ନାହିଁ କ ତାଙ୍କୁ କଥା କହିବ ନାହିଁ । ସାନ୍ନିଧର ସୁଯୋଗ ନ ପାଇଲେ ବଳେ ସେ ଦୂରେଇ ରହିବେ ।

—ଚଉଦ—

**ଟେ**ାଉ ଡାକଲ, ଆଲେ ଗୀତା, ଦେଖିଲୁ କଏ ଆସିଛି।

ବହି ଉପରୁ ଆଖି ଫେରାଇ ଚାହିଁଲ। ଗୋକୁଳ ଭାଇଙ୍କ ଝିଅ ନରୁପମା ଓ ବାସୁଦାଦାଙ୍କ ଝିଅ ରେଣୁ ଆସିଛନ୍ତି। ରେଣୁର କୋଳରେ ଟିକ ପିଲଟିଏ। ଉଠିଯାଇ ଦୁହିଁଙ୍କର ହାତ ଧର ଟାଣିଲ। ନରୁ ମୁହଁ ଲଦ କହଲ, କାହିଁକ ବା ଏତେ ସୋହାଗ, ମୁଁ ତୋତେ ଦେଖିବାକୁ ଆସିଛ କ? ମୋ ଆଈକୁ ଦେଖିବାକୁ ଆସିଛ ମ। ନେଇ ଯା ସେଇ ରେଣୁକୁ।

ନରୁ ପିଲଦନୁ ଅଭମାନମା। ସମ୍ପର୍କରେ ଝିଆସି ସିନା, ସେ ମୋର ସମବୟସୀ। ମୋର ସେ ସାଙ୍ଗ। ପିଲଦନରୁ ବଡ଼ ହେବା-ଯାଏ, ସେ ଶାଶୁ ଘରକୁ ଯିବାଯାଏ ଆମେ ଏକାଠି ଖେଳଛୁଁ, ଗପିଛୁଁ, କୁମାର ପୂନେଇଁ ଗୀତ ଶିଖଛୁଁ ଓ ବୋଲଛୁଁ।

ମୁଁ କଛି ନ କହ ତାର ହାତ ଧର ଜୋରରେ ଟାଣି-ଆଣିଲ। ପିଲଦନର ଧଡଆ ଧେଡ୍ଙ୍ଗ ନରୁ ତ ଆଜ ଆଉ ସେମିତ ନାହିଁ। ଦେହରେ ମାଂସ ଲଗିଛି, ରଙ୍ଗ କେତେ ତେଜ ଦେଖା ଯାଉଛି। କେତେ ସୁନ୍ଦର ଦଶୁଛି। ତାକୁ ଆଣି ପାଖରେ ବସାଇଲ। ରେଣୁ ଛୁଆଟିକୁ ଧର ମୋ ପାଖରେ ବସିଲ। ମୋଟାମୋଟି ହୋଇ କେତେ ସୁନ୍ଦର ପୁଅ। ମୁହଁକୁ ଗୁହିଁ କର କର ହୋଇ ହସୁଥାଏ। ଆନନ୍ଦରେ ମୋ ମନ ପୂର ଉଠିଲ। ରେଣୁ କୋଳରୁ ପୁଅକୁ ନେଇ ଟେଲ କଲ। ପରିହାସ କର କହଲ, ଆଲେ, ନରୁ ଏଇ ଅପୂର୍ବ କଣ୍ଢେଇଟିକୁ କେଉଁଠୁ ପାଇଲୁ ମ?

**ନରୁ କହଲ,** ତୋର ପାଇଁ ଗଢ଼ିଛି ଲେ।

କହିଲି, ସତେ ମୋର ପାଇଁ ? ତେବେ ଆଜୁ ଆଉ ଛଡେ ଦେବି ନାହିଁ ।

ପିଲାଟିକୁ କୋଳରେ ଯାକି ଧରିଲି । ନରୁ ସଙ୍ଗେ କେତେ-ବେଳଯାଏ କଥାଭାଷା ହେଲି । ସବୁ କଥା ମୋର ମନେ ନାହିଁ । ପ୍ରତିଦିନ ଜୀବନରେ କେତେ ଘଟଣା ଘଟିଯାଏ । କେତେଦିନ ଯାଏ ସେ ସବୁ ମନେ ରହେ, ପୁଣି ମନରୁ ପାଶୋରି ଯାଏ । କିନ୍ତୁ ଯେଉଁ ଘଟଣା ମଣିଷର ହୃଦୟକୁ ଛୁଇଁଥାଏ, ମନରେ ଦୁଃଖର ଗମ୍ଭୀର ଗାର ଟାଣି ଦେଇଥାଏ, ସେ ଘଟଣା ମନରୁ କେବେ ପୋଛି ହୋଇ ଯାଏ ନାହିଁ ।

ସେଦିନ ସେପରି ଗୋଟିଏ ଘଟଣା ଘଟିଥିଲା । ଅନ୍ୟମାନଙ୍କ ଆଖିରେ ଛୋଟ ହେଲେ ବି ମୋ ଆଖିରେ ସେ ଅତି ବଡ ।

ପିଲାଟି ମୋ କୋଳରେ କାନ୍ଦି ଉଠିଲା । ମୁହଁକୁ ଏପାଖ ସେପାଖ କରି କଅଣ ଯେପରି ଖୋଜୁଥିଲା । ବୁଝିଲି, ତାକୁ ଭୋକ କଲାଣି, ମାଆର କ୍ଷୀର ଖାଇବାକୁ ସେ ଅସ୍ଥିର ହେଉଛି । ମୁଁ ଗୋଡ଼ ହଲାଇ ତାକୁ ଯେତେ ବୁଝାଇଲି ସେ ବୁଝିଲା ନାହିଁ । ମନ ଦୁଃଖରେ କହିଲି, ନରୁ, ପୁଅକୁ ଭୋକ କଲାଣି, ଟିକିଏ କ୍ଷୀର ଦେ ।

ସେ କହିଲା, ତୁ ଦେଉନୁ ।

ମୋ ମୁହଁକୁ ଚାହିଁ ନରୁ ହସିଲା । ଲେଖାରେ ଝିଅଟିଏ ହେଲେ ବି ପିଲାଦିନର ସଙ୍ଗିନୀ ତ । ତେଣୁ ଆଉ କିଛି ନ ଭାବି ତାର କଥାକୁ ନଗଣ୍ୟ ଥଟ୍ଟା ମଣି ମୁଁ ବି ହସି ହସି କହିଲି, ମୋ କ୍ଷୀର ପିନା ତୋ ପାଇଁ, ସେ କେମିତି ଖାଇବ, ନେ—।

କାନ୍ଦିଲି ପିଲାକୁ ତା କୋଳକୁ ବଢ଼ାଇଦେଲି । ସେ ନେଲା ନାହିଁ । କହିଲା, ନାଇଁ ନାଇଁ ତୁ ଦେ, ଦେଖିବା ସେ ଚୁପ .ହେବ କି ନାହିଁ ।

କେଜାଣି କାହିଁକି ରେଣୁ ହସି ହସି ଗଡ଼ିଗଲା । ନରୁ ତାକୁ ଆଖି ଦେଖାଇଲା । ତା କଥାରେ ଯେ ଗୋଟାଏ ଉଦ୍ଦେଶ୍ୟ ଲୁଚି ରହିଥିଲା ମୁଁ ଏହା ବୁଝିପାରିଲି ନାହିଁ । ଆଶ୍ଚର୍ଯ୍ୟ ହୋଇ ତାକୁ ଚାହିଁ ରହିଲି । ରେଣୁ ନା ଡବଡବା । ନରୁର ଆଖିଦେଖାକୁ ନ ମାନି କହିଲା, କମଳଭାଇ ସ୍ତ୍ରୀ ପରି କହୁଥିଲା, ତୋର କୁଆଡ଼େ—

ନରୁ ତା ପାଟିରେ ହାତ ଚାପି ଧରି କହିଲା, ଚୁପ୍ ।

ରେଣୁ ଛେପ ଢୋକି ଚୁପ ରହିଲା ।

କେତେ ଭାବନା କ୍ଷଣକରେ ମୋ ମୁଣ୍ଡରେ ଖେଳିଗଲା । ଦୁଇ ଆଖି ଭରିଗଲା ଲୁହରେ । କହିଲି, ମୋତେ ପରୀକ୍ଷା କରିବାକୁ ଆସିଥିଲୁ ନରୁ ? ଆଜଯାଏ ତ ତୋର ଦେଖା ଦର୍ଶନ ନ ଥିଲା, ଆଜି କାହିଁକି ତୋର ସ୍ନେହ ଉଛୁଳି ପଡ଼ିଲା, ଏ ଘରେ ତୋର ପାଦ ପଡ଼ିଲା, ଏବେ ମୁଁ ଜାଣିଲି ।

ନରୁ ଲାଜରା ହେଲା । କହିଲା, ନାଇଁ ଲୋ, ତୁ ଏଥିରୁ କଅଣ ପାଇବୁ ? ରେଣୁଟା ପିଲା ଝିଅ । ଗାଲ ଚିପିଲେ ଦୁଧ ବାହାରିବ । ତା କଥା ତୁ କାହିଁକି ଶୁଣୁଛୁ ? ତୁ ପିଲାଦିନର ସାଙ୍ଗ ବୋଲି ପରିହାସ କରି କହିଲି ସିନା ।

ତା କଥାରେ କାନ ନ ଦେଇ କହିଲି, ପୁଅକୁ କ୍ଷୀର ତୁ ଦେ ନରୁ । ଆଉ ତୁ ତ ମୋର ପିଲାଦିନର ସାଙ୍ଗ, ମୋର ଝିଆରୀ, ଝିଅଠୁଁ ବଳି; ତୁଇ ନିଜେ ମୋତେ ପରୀକ୍ଷା କରି ଯା । ମୋର

କ୍ଷୀର ଭୁଇ ଟିକେ ରୁଖି ଯା । ତୋ ମନର ଶୋଷ ମରିବ । କମଳା-ଭାଇର ଘରଯାକୁ ଯାଇ କହିବୁ । ସେ ତ ମୋର ଭାଉଜ । ତାଙ୍କ ଆଗରେ ମୁଁ ନଙ୍ଗଳା । ମୋର ଫୁଙ୍ଗୁଳା ଦେହ ସେ ସହସ୍ର ଥର ଦେଖିଥିବେ । ଉପକାରିଆ ଭାଉଜଙ୍କୁ ମୋର ରାଣ ପକାଇ ନଷ୍ଟି ଥରେ କହିବୁ ଲୋ ନରୁ, ତାଙ୍କ ଭାଇମାନଙ୍କ ରାଣ, ମୋତେ ଦେଖିବାକୁ ଥରେ ସେ ଆସିବେ । କେଉଁଠୁ କଅଣ ଶୁଣି ଦାଣ୍ଡରେ ଦୁର୍ନାମ କରିବା ଆଗରୁ ଥରେ ସେ ମୋତେ ପୃଛିଯିବେ ।

କାନ୍ଦିଲି ପିଲାକୁ ତା କୋଳରେ ରଖିଲି । ନରୁର ମୁଣ୍ଡଟିକୁ ମୋ ଛାତି ଆଡ଼କୁ ନୁଆଇଁ ଆଣିଲି । ସେ ମୁଣ୍ଡ ଟାଣି ନେଇ କହିଲା, ଦୁନିଆଁରେ କିଏ କେତେ କଥା କହିବେ ଲୋ ଗୀତା, ସମସ୍ତଙ୍କୁ କଅଣ ତୁ ପରୀକ୍ଷା ଦେଇପାରିବୁ ? ନିଜେ ଭଲ ହେଲେ ନିଜ ଉପରେ ବିଶ୍ୱାସ ଥିଲେ ଦୁନିଆଁ ଲୋକଙ୍କ ହାସ ପରିହାସକୁ ହସି ଉଡ଼ାଇଦେବୁ । ତତେ ପରୀକ୍ଷା କରିବାକୁ ମୁଁ ଆସି ନ ଥିଲି ଲୋ ଗୀତା, ଆଖି ଛୁଇଁ ଶପଥ କରି କହୁଛି, ମୋ ଜୀବନରୁ ଅଧିକ ମୋର ଏଇ ଟିକି ଛୁଆକୁ କୋଳରେ ଧରି ମୁଁ କହୁଛି । ଦୁନିଆଁ ଲୋକଙ୍କର କୁହାଟ ତୋତେ ଜଣାଇଦେବାକୁ ଆସିଥିଲି । ତୁ କଅଣ, ସେ କଥା କଅଣ ତୋର ପିଲାଦିନର ସାଙ୍ଗ ନରୁକୁ ଅଜଣା ଅଛି ? ତୁ ଛଳ କରିବୁ, ତୋ ମନରେ ଦୁଃଖ ହେବ, ଏହା ମୁଁ ଭାବି ପାରି ନ ଥିଲି । ତୋର ଗୋଡ଼ ଧରୁଛି ଗୀତା, ମୋତେ କ୍ଷମା କର ।

ନରୁର ଦୁଇ ଆଖିରୁ ଦୁଇଧାର ଲୁହ ଗଡ଼ିଆସିଲା । ସେ ମୋର ଗୋଡ଼ ଧରିବାକୁ ନଇଁ ପଡ଼ନ୍ତେ ମୁଁ ତାର ମୁଣ୍ଡ ଧରି ଉଠାଇଲି । କହିଲି, ଥାଉ ନରୁ, ମୋର ଦୁର୍ଭାଗ୍ୟ ତୁମ ମନରେ

କୌତୂହଳ ଆଣିଛୁ, ତୁମ ତୁଣ୍ଡରେ କଥା କୁହାଉଛୁ ଏଥିପାଇଁ ମୁଁ କାହାରିକ ଦୋଷ ଦେଉନାହିଁ । କାହାରି ଉପରେ ମୋର ମାନ ଅଭିମାନ ନାହିଁ ।

ଆଖିରୁ ଲୁହ ପୋଛୁଛି । ଆଜଯାଏ ମନର ଗୋପନ କୋହକୁ ପୋଛୁ ପାରିନାହିଁ ।

## —ପନ୍ଦର—

**ମା**ଇପି ଘର । ଅଭାବ ଅସୁବିଧା ପଡ଼ିଲେ କାହାକୁ କହିବାକୁ କେହି ନାହିଁ । ସେଥିପାଇଁ ବପୁା ଯାଇ ରାଧା ବେଳେ ବେଳେ ଆସେ । ଆମର ଖବର ଅନ୍ତର ବୁଝେ । ଉପରେ ପଡ଼ି ପାଞ୍ଚ ପାଇଟି କରିଯାଏ ।

ଦିନେ ସେ ବୋଉ ଆଗରେ କହୁଥିଲା, ଶୁଣିଲଣି, ମହନ ସାଆନ୍ତଙ୍କ ଘରେ ଅଶାନ୍ତି । ତାଙ୍କ ଘରକଥା ସିନା ପଦାକୁ ଫୁଟି ବାହାରେ ନାହିଁ, ହେଲେ ମତେ ତ କେଉଁ କଥା ଅଛପା ରହିବ ନାହିଁ । ବୋହୂଟା ସୁନ୍ଦର ହେଲେ କଅଣ ହେବ, ଗୁଣ ସେମିତି ଭଲ ନୁହେଁ । ଶାଶୁ ଶଶୁର ଅସନ୍ତୋଷ । ବାମର ମନ ବି ସେତେ ମାନୁ ନାହିଁ ।

ତା କଥା ମୋ କାନରେ ପଡ଼ିଲା । ଖରାପ ଲାଗିଲା । ଏଡ଼େ ସୁନ୍ଦର ବୋହୂ, ତାଙ୍କର ଗୁଣ ପୁଣି ଖରାପ । କଥାଟା ଜାଣିବାକୁ ମନ ଛଟପଟ ହେଲା । ଆଗ୍ରହରେ ବାଁରେଇ ହୋଇ ପାନ ଦିଖଣ୍ଡି ନେଇ ପାଖକୁ ଗଲି । ମୋତେ ଦେଖି ରାଧା ତୁନି ହେଲା । ଲଜ୍ଜିତ ହୋଇ ଘରଭିତରକୁ ଆସି କବାଟ ଆଉଜାଇ ଦେଲି । କବାଟ ଫାଙ୍କରେ କାନ ଦେଇ ଶୁଣିଲି ।

ରାଧା ଥିର ଥିର ହୋଇ ଯାହା କହିଲା ସବୁ ଶୁଣିପାରିଲି ନାହିଁ। ଯେତିକ ଶୁଣିଲି ସେତିକରୁ ବୁଝିଲି, ଦାମଭାଇର ସ୍ତ୍ରୀ ହାଉଡ଼ୀ, ସଣ୍ଢୁଣୀ ଶିଖିନାହିଁ । ଶାଶୁ ଶଶୁରଙ୍କୁ କିପରି ମାନ୍ୟ କରିବାକୁ ହୁଏ, କିପରି ସେମାନଙ୍କର ସେବା କରିବାକୁ ହୁଏ, ଜାଣେନାହିଁ । କଥା କଥାରେ ଅବଗୁଣ, ଖୁଣ୍ଟା । ଦାମଭାଇଙ୍କ ସଙ୍ଗେ କଳି କରେ । ଦିନଟିଏ ଶାନ୍ତିରେ କଟୁନାହିଁ । ସେ ବଡ଼ଘର ଝିଅ, ତେଣୁ ଏ ସବୁ ତ ଗୁଣ ଭିତରେ ଗଣା ହୁଏ ।

ରାଧା ଭ୍ରୂଲତା ଟେକ କହିଲା, ଦାମବୋଉ ସାନ୍ତାଣୀ ବୁଢ଼ାଙ୍କୁ କହିଲେ, ଗାଁ ଝିଅ, ପୁଣି ଗରିବ ବୋଲି ଗୀତା ତମ ମନକୁ ଆସିଲା ନାହିଁ । ସେ ଯଦି ଏ ଘରର ବୋହୂ ହୋଇ ଆସିଥାନ୍ତା କେଉଁ କଥାରେ କିଏ ତାକୁ ବାଛୁ ଥାଆନ୍ତା କି ?

ବୋଉ କହିଲା, କପାଳ ଲୋ ରାଧା, ଯାହା ଭାଗ୍ୟ ଯେଉଁଠି ।

ମୋର ଗୁପ୍ତର କେଉଁ ଅଜଣା କୋଣରେ ଆମୋଦ ଆନନ୍ଦର ତେଉଟିଏ ଖେଳି ଯାଇଥିଲା । ତାଙ୍କ ଘରର ବୋହୂ ମୁଁ ନୁହେଁ ହେବାର ତ ଆଶା ନାହିଁ, ତଥାପି ପରୋକ୍ଷରେ ମୋ ଗୁଣର ପ୍ରଶଂସା ଶୁଣି; ସେମାନଙ୍କ ଘରର ଅଶାନ୍ତି କାହାଣୀ ଜାଣି ମୋତେ ଖୁସି ଲାଗିଥିଲା ।

ଦାମଭାଇ ଅନେକ ଦିନ ହେଲା ଆମ ଘରକୁ ଆସିନାହାନ୍ତି । ମୋ ବାପାଙ୍କ ପାଖରୁ କୌଣସି ଚିଠିପତ୍ର ପାଇନାହୁଁ । ମୋର ମନେ ହେଲା ଯେପରି ଏହା ଭିତରେ ଦାମଭାଇଙ୍କର ସେହିଦିନର ଧମକର କିଛି ସମ୍ବନ୍ଧ ଅଛି । ହୁଏତ ବାପାଙ୍କ ପାଖକୁ ସେ ଆମର ଚିଠି ପଠାଇ ନାହାନ୍ତି କିମ୍ବା ଚିଠି ବଦଳାଇ ବୋଉ

ନାମରେ ବଧୂବାବୁଙ୍କ ଘର ସମ୍ବନ୍ଧ କଥା ମନାକରି ଲେଖି ଦେଇଛନ୍ତି । ତାଙ୍କ ପକ୍ଷରେ ଏତକ କରିବା ଅସମ୍ଭବ ନୁହେଁ !

ସେଦିନ ରାଧାର କଥାରୁ ତାଙ୍କ ଘରର ସବୁ ଖବର ବୁଝିଥିଲି । ଦାମଭାଇଙ୍କର ସବୁ ଛଳନା, ଅପରାଧ, ଅଭଦ୍ରତା ସତ୍ତ୍ୱେ ତାଙ୍କ ପ୍ରତି ମନରେ ସହାନୁଭୂତି ଆସିଲା । ବାହା ହୋଇ ମଧ୍ୟ କାହିଁକି ମୋ ପ୍ରତି ଆକୃଷ୍ଟ, କାହିଁକି କରଛଡ଼ା ଦେବା ସତ୍ତ୍ୱେ ବାରମ୍ବାର ଆସି ମୋତେ ଖୁସି କରିବାକୁ ଚେଷ୍ଟା କରି ବିରକ୍ତ କରଯାଆନ୍ତି, ଏହାର କାରଣ ମୁଁ ବୁଝିପାରିଲି । ଘରେ ଅଶାନ୍ତି, ସ୍ତ୍ରୀ କରି ହାତଧରି ଘରକୁ ଆଣି ସ୍ତ୍ରୀଠାରୁ ସେ ଯାହା ଆଶା କରନ୍ତି ପାଇ ନାହାନ୍ତି । ତାଙ୍କ ପକ୍ଷରେ ଅନ୍ୟ ସ୍ତ୍ରୀକୁ ଅନାଇବା ଆଶ୍ଚର୍ଯ୍ୟର କଥା ନୁହେଁ । ସେଥିପାଇଁ ସେ ମୋ ପାଖକୁ ଆସନ୍ତି । କେତେ କଥା କହିବାକୁ ମନ କରନ୍ତି । ମୁଁ ତାଙ୍କୁ କିଛି କୁହାଇ ଦିଏ ନାହିଁ । ହତାଶ ହୁଅନ୍ତି । ତାଙ୍କର ଆଶା ବିଫଳ ହେବାରୁ ସେ ମୋ ଉପରେ ପ୍ରତିଶୋଧ ନେବାକୁ ଅନ୍ୟ ଉପାୟ ପାଉଛନ୍ତି ।

## —ଷୋହଳ—

ଆଜିର ଦୁଇଦିନ କଟିଗଲା ।

ବାପାଙ୍କ ପାଖରୁ ଦେଉଣ ପାଇଲୁ ନାହିଁ । ସେଦିନ ଗାଧୋଇ ନେଉଛି ବେଳେ ପିଣ୍ଡାରେ ବସିଛି, ବୋଉ ମୋ ମୁଣ୍ଡ ବାନ୍ଧି ଦେଉଛି, ସେ ବିରକ୍ତ ହୋଇ କହିଲା, କେଡ଼େ ଅସମର୍ଥା ଲୋ ଗୀତା, ମୋର ତର ହୁଏ ନାହିଁ ସିନା, ନିଜ ହାତରେ ମୁଣ୍ଡ ବାନ୍ଧି ପାରୁନୁ ?

ନଈକୂଳିଆ ପବନ ଥଣ୍ଡାଳିଆ ଲାଗୁଥାଏ । ଶୀତ ବେଶି ପକାଉଥାଏ । ବାଳ ଖୋଲି ବସିଥାଏ ବୋଉ ଆଗରେ । କଏ ଜଣେ ଦାଣ୍ଡପାଖ ଜଙ୍ଗିର ଖଡ଼ ଖଡ଼ କରି ଡାକିଲେ, ଅପା, ଅପା ।

ଅତି ପରିଚିତ, ଅତି ଆପଣାର ସେ ସ୍ୱରଟି । ଅସମୟରେ ସେ କାହିଁକି ଆସିଛନ୍ତି ବୁଝିପାରିଲି ନାହିଁ । ଆଗ୍ରହ ହେଲା, ଉଠିଯାଇ କବାଟ ଖୋଲିବି ! ଲାଜ ମାଡ଼ିଲା । ତୁନି ହୋଇ ବସି ରହିଲି ।

ପୁଣି ସେ ଡାକିଲେ ।

ବୋଉ ପଚାରିଲା, କଏ କହିଲେ ଗୀତା ?

ମୁଁ ଜାଣେ; କିନ୍ତୁ ତୁଣ୍ଡରେ ତାଙ୍କର ନାମ ଉଚ୍ଚାରଣ କରିବାକୁ ଲାଜ ମାଡ଼ିଲା ।

ବୋଉ କବାଟ ଖୋଲିବାକୁ ଉଠିଗଲା ।

ପିଠି ଉପରେ ଅଲଗା ବାଳ ଖେଳା ହୋଇ ପଡ଼ିଥାଏ । ମୁଣ୍ଡ ଉପରକୁ ଲୁଗା କାନି ଟାଣି ତଳକୁ ଚାହିଁ ବସିରହିଲି ।

ବୋଉ କବାଟ ଖୋଲିଲା । ମୁଁ କଣେଇ ଚାହିଁଲି । ଅମୁଭାଇ ଖଞ୍ଜା ଭିତରକୁ ଆସିଲେ । ତଳେ ମୁଣ୍ଡ ଲଗାଇ ବୋଉକୁ ପ୍ରଣାମ କଲେ । ବୋଉ କବାଟ ବନ୍ଦ କରି ପଚାରିଲା, କେବେ ଆସିଛୁ ବାପ ?

ଅମୁଭାଇ ମୋ ଆଡ଼କୁ ବଙ୍କେଇ ଚାହିଁ କହିଲେ, ଆଜି ।

ମୁଁ ପିଣ୍ଡା ଉପରେ ଠିଆ ହୋଇ ତାଙ୍କୁ ପ୍ରଣାମ କଲି । ସେ ମୁରୁକେଇ ହସିଲେ । କିଛି କହିଲେ ନାହିଁ । ମୋର ମନେ ହେଲା,

ସେହି ହସରେ କେତେ ସ୍ନେହ ସମ୍ବଗ, କେତେ ହୃଦହଜା ମୋହ ପୂର୍ଣ୍ଣ ହୋଇଥିଲା ।

ବୋଉ ଆସନ ଖଣ୍ଡେ ଆଣି କାନ୍ଥକୁ ଲଗାଇ ପାରଦେଲା । ଦୁଇ ତିନ ହାତ ଗୁଡ଼ ସେ ମୋ ଆଗରେ ବସିଲେ । ବୋଉ ମୋ ମୁଣ୍ଡବନ୍ଧାରେ ଲାଗିଲା । ମୁଁ ଧୀରେ ଧୀରେ ଲୁଗାଟି ଟେକ ମୁହଁ ଘୋଡ଼ାଇ ବସିଲି ।

ଏଣୁ ତେଣୁ କେତେ କଥାଭାଷା ହେଲେ । ଆଜ ସେସବୁ ମୋର ମନେ ନାହିଁ । ବୋଉ ପଚାରିଲା, ଏବର୍ଷ ଅଜୁର ବାହାଘର କରୁଛ ?

ଅଜୟ ତାଙ୍କର ବଡ଼ ଭାଇ ।

ସେ କହିଲେ, କେଉଁଠି ଠିକ୍ ହୋଇନାହିଁ । କମଳଭାଇଙ୍କି ସେହି କଥା ପଚାରିଥିଲି । ସେ କହିଲେ, ପାଖ କୌଣସି ସ୍ଥାନରେ ଠିକଣା ହୋଇନାହିଁ । ବାହାଘର କରିବାକୁ ବସିଲେ କେତେ ଆୟୋଜନ ଲୋଡ଼ା । ଟଙ୍କାପଇସା ଅଭାବ । ଜମି ଗୁର ମାଣ ଗୁଷ । ଏ ବର୍ଷ ବର୍ଷା ଅଭାବରୁ ଆଠ ଅଣା ଫସଲ ମିଳିନାହିଁ । ଏଇସବୁ କାରଣରୁ ଏ ବର୍ଷ ବାହାଘର ହେଲାପରି ଲାଗୁନାହିଁ । ଅଜୁଭାଇଙ୍କର ତେଣିକି ମନଜ୍ଞାନ ନାହିଁ ।

ତାଙ୍କର କଥା ଶୁଣି ମନରେ ଦକ ଦକ ଜଳୁଥିବା ଆଶାର ଦୀପଟି ଥର ଥର ଲିଭିଗଲା ।

ବାରଦା ଆମ ଗାଁକୁ ବାଟ ତିନ କୋଶ । ଗ୍ରେଟ ଗାଁଟି । ବାଦ ବିବାଦ, ଶତ୍ରୁତା, ସବୁବେଳେ ଗାଁଟାକୁ ଦୋହଲାଉଥାଏ ।

ଏ ଭାଇ ଦିଓଟିଙ୍କର ଅବସ୍ଥା ଆଜ ଖରାପ ହୋଇଛି । ବାପ ଥାଉଁ ଥାଉଁ ମାଲମକଦ୍ଦମାରେ ପୈତୃକ ସମ୍ପତ୍ତି ସବୁ ସରିଥିଲା । ଯେଉଁ ଦି ଗୁଣ୍ଠ ମାଣ ଥିଲା ସେଥିରେ କଷ୍ଟେ ମଷ୍ଟେ ଚଳନ୍ତି ।

ମୋର ମୁଣ୍ଡବନ୍ଧା ସରିଲା । ଧୀରେ ଧୀରେ ଘରଭିତରକୁ ଆସି ପାନ ଭାଙ୍ଗି ବସିଲି ।

ବୋଉ ପଚାରିଲା, ଅମୁ, ଅଜୁ ସିନା ଘରଧନ୍ଦାରେ ବ୍ୟସ୍ତ; ତୋର ତ କିଛି କାମ କରିବା ଦରକାର । ବସି ଖାଇଲେ ନଈ-ବାଲି ସରିବ । ତୁ ପାଠସାଠ ପଢ଼ିଛୁ । କେଉଁଠି ଚାକିରି ଚେଷ୍ଟା କରୁନୁ ।

ସେ କହିଲେ, ଆମ ପରି ଦରପାଠୁଆଙ୍କୁ ପଚାରୁଛି କିଏ ? ଆଜିକାଲି ଗିଲଗିଲପୁଆ ଗଗନେ ଉଡ଼ୁଛନ୍ତି । ତଥାପି, ଦିନେ ଦି ଦିନ ଭିତରେ ମୁଁ କଟକ ଯାଉଛି । କେଉଁଠି ରହିବାକୁ ଚେଷ୍ଟା କରିବି ।

ପାନ ଦିଖଣ୍ଡି ଆଣି ଅମୁଭାଇଙ୍କ ହାତକୁ ବଢ଼ାଇଦେଲି । ପୁଣି ଘରଭିତରକୁ ଆସିଲି ।

କିଏ ଦାଣ୍ଡ କବାଟ ଖଡ଼ ଖଡ଼ କଲା । ଅମୁଭାଇ କବାଟ ଖୋଲିଲେ । ପିଲାଟିଏ ଚିଠି ଖଣ୍ଡେ ଦେଇଗଲା । ପୋଷ୍ଟ ପିଅନ୍ ପଠାଇଦେଇଛି ।

—ସତର—

ଅତି ଆଗ୍ରହରେ ବୋଉ ଲଫାପା ଖୋଲିଲା । ଲଫାପା ଭିତରେ ମୋଟେ ଖଣ୍ଡିଏ ଚିଠି । ଅମୁଭାଇଙ୍କ ଦେଇ କହିଲା, ପଢ଼ିଲୁ, ବାବୁ ।

ମୁଁ କବାଟ ପାଖକୁ ଘୁଞ୍ଚିଯାଇ କାନ ପାରିଲି ।

ଅମୁଭାଇ ପଢ଼ିବାକୁ ଆରମ୍ଭ କଲେ ।

—ମୋ ଦେହ ସେତେ ଭଲ ନାହିଁ । ଔଷଧ ଖାଉଛି । ତାଙ୍କର ପୁଅ ପ୍ରବୋଧ ବିଷୟରେ ଟିପଣୀ ଭଲ ସୁଝିତ । ବିଧୁବାବୁଙ୍କ ଘରକୁ ମୁଁ ନିଜେ ଯାଇଥିଲି । ସେ କେତେ ମାନ୍ୟ କଲେ । ତାଙ୍କର କଉଠଲିକା ନାହିଁ । ଘରଦ୍ୱାର, ଭିତର ବାହାର ସବୁ ମୋତେ ଆଗ୍ରହରେ ଦେଖାଇଲେ । ତାଙ୍କର କୋଠାଘର ।

ପ୍ରବୋଧଟି ଅତି ସୁନ୍ଦର ପିଲା । ମୋତେ ଦେଖି ପ୍ରଣାମ କଲା । ଲାଜ ଲାଜ ହୋଇ ସାଇକଲ୍ ଧରି କୁଆଡ଼େ ଚାଲିଗଲା । ତମର ସମୁଦୁଣୀ, କି ସୁନ୍ଦର ତାଙ୍କ ରୂପ, କଥା, ବ୍ୟବହାର । ଅତି ସ୍ନେହୀ । ଗୀତାର ଶାଶୁ ହେଲେ ଠିକ୍ ମା ଝିଅ ପରି ଦିଶିବେ । ମତେ କହିଲେ, ସମୁଦି, ମୁଁ ଆଉ କିଛି ଚାହେଁ ନାହିଁ, ଖାଲି ବୋହୂଟି ମୋର ଲୋଡ଼ା । ସେ ହେବ ମୋ ଆଖିର ପିତୁଳା ।

କହିଲି, ମୁଁ ଅତି ଗରିବ । ଝିଅଟି ବ୍ୟତୀତ ଧନସମ୍ପତ୍ତି ଆଉ କିଛି ମୋର ନାହିଁ । ଜନ୍ମ ଦେଇଛି, ସେହ ଆଦରରେ ବଢ଼ାଇଛି, ଚାରି ଅକ୍ଷର ପଢ଼ାଇଛି । ପରଘରେ କିପରି ସଣ୍ଟୁଣାରେ ଚଳିବ, ଶାଶୁଶ୍ୱଶୁରଙ୍କୁ ବାପ ମାଆଙ୍କଠୁ ଅଧିକ ମଣି ଭକ୍ତି କରିବ, ସେବା କରିବ, ସେକଥା ଶିଖାଇଛି । ବେଷବାସ ଓ ଘରକାମ ସବୁ ଜାଣେ । ରୂପ, ଗୁଣକୁ ମୁଁ କାହିଁକି ପ୍ରଶଂସା କରିବି ? ନିମନ୍ତ୍ୟ କରିବାକୁ ଆଗ୍ରହ ଥିଲେ, ତମେ ସମୁଦୁଣୀ ନିଜେ ଦେଖ ।

ସ୍ଥିର ହେଲା, ତମେ ସବୁ ଧବଳେଶ୍ୱର ଆସିବ । ବୁଧୁବାବୁ ତାଙ୍କ ସ୍ତ୍ରୀଙ୍କୁ ନେଇ ସେଠିକି ଯିବେ । ସେଇଠି ଦେଖା-ସାକ୍ଷାତ ହେବ । ଯଦି ତାଙ୍କର ପସନ୍ଦ ହୁଏ, ଆଗ୍ରହ ହୁଏ, ସେ ଜବାବ୍ ଦେବେ । ସେ ଧନଦରବ ଚାହାଁନ୍ତି ନାହିଁ, ଚାହାନ୍ତି ମନମାଫି ବୋହୂଟିଏ । ରୂପଟି ପଛ, ଢଙ୍ଗଟି ଆଗ ।

ଧବଳେଶ୍ୱର କେବେ ଯିବାକୁ ହେବ, ମୁଁ ପରେ ଲେଖିବି । ମୋର ବେଳ ହେଲେ ମୁଁ ଯିବି, ନୋହିଲେ ମୁଁ ଲେଖିଲେ ଦାମ କି ଗୋକୁଳକୁ ସାଙ୍ଗରେ ନେଇ କଟକ ଆସିବ । ଯାହା ଧବଳେଶ୍ୱରଙ୍କର ଇଚ୍ଛା । ଆମେ ଚେଷ୍ଟା କରିବା । ଗୀତାର କପାଳରେ ଯାହା ଲେଖା ହୋଇଛି, ସେଇଆ ଫଳିବ ।

ଅମୁଭାଇ ଚିଠି ପଢ଼ିସାରିଲେ । ଭାବିଥିଲି, ତାଙ୍କର ମୁହଁରେ ପରିବର୍ତ୍ତନର ଭାବ ଦେଖିବି; କିନ୍ତୁ କିଛି ଲକ୍ଷ୍ୟ କରିପାରିଲି ନାହିଁ । ସେ ଆନନ୍ଦିତ ହୋଇ କହିଲେ, ଭଗବାନଙ୍କର ଇଚ୍ଛା । ଗୀତା ପରି ସରଳ ସୁନ୍ଦର ଢଙ୍ଗର ପିଲା, ଭଗବାନ ତାକୁ ତାର ଯୋଗ୍ୟ ଜାଗା ନିଶ୍ଚୟ ଦେବେ ।

ଦାମଭାଇଙ୍କ ପ୍ରତି ମନରେ ଯେଉଁ ସନ୍ଦେହ ପୋଷିଥିଲି ସେତିକି ଉଭେଇଗଲା । ତାଙ୍କୁ ଯେତେ ମନ୍ଦ ମନେ କରିଥିଲି ସେ ତାହା ନୁହଁନ୍ତି । ମତେ ଖୁସି ଲାଗିଲା । ଏଥର ସେ ଆସିଲେ ତାଙ୍କୁ ହସିକରି କଥା କହିବି ।

ଅମୁଭାଇ ଚାଲିଗଲେ । ମୁଁ ବୋଉ ପାଖକୁ ଆସି ଜାଣି ନ ଜାଣିଲା ପରି ପଚାରିଲି, ବାପାଙ୍କ ପାଖରୁ ପତ୍ର ଚିଠି ଆସିଛି ?

ବୋଉ କହିଲା, ହଁ, ଲେଖିଛନ୍ତି ଧବଳେଶ୍ୱର ଯିବାକୁ । ମୁଁ ବନେ ତାଙ୍କୁ କହିଥିଲି । ସେ ଚିଠି ଦେଲେ ଆମେ ଯାହା ସଙ୍ଗରେ ହେଲେ ଯିବା ।

ବେଶି ପଚାରିଲି ନାହିଁ । ସଞ୍ଜବେଳା ଧଳା ସଳିତା ବଳି ବସିଲି । ମୁଣ୍ଡ ଭିତରେ କେତେ ଭାବନାର ସଂଘର୍ଷ ସୃଷ୍ଟି ହେଲା । ତିନୋଟିରୂପ ଆଖି ଆଗରେ ଉଭା ହେଲା—ଦାମଭାଇ, ଅମୁଭାଇ, ଆଉ ଏ ନୂଆ ପ୍ରବୋଧବାବୁ । ଦାମଭାଇ ଆଜି ସଂସାରୀ । ତାଙ୍କ କଥା ମନରୁ ଛାଡ଼ିଦେବାହିଁ ଭଲ । ଅମୁଭାଇ ବହୁତ ଦୂରରେ । ଅଜୁଭାଇ ବାହା ନ ହେବାଯାଏ ତାଙ୍କ ପ୍ରଶ୍ନ ଉଠିବ ନାହିଁ ।

ପ୍ରବୋଧବାବୁ । ରୂପରେଖ ଦେଖିନାହିଁ । ବାପାଙ୍କର ଚିଠିରୁ ଜାଣିଲି ଶୁଣିଲି, ସେ ସୁନ୍ଦର, ଗୁଣୀ, ଧନୀଘର ପୁଅ ।

ବଧୂବାବୁଙ୍କ ସ୍ତ୍ରୀ କଟକରେ କେତେ ସୁନ୍ଦରୀ ଝିଅ ଦେଖିଥିବେ । ତାଙ୍କ ଆଖିକି ଗାଉଁଲି ଝିଅ ଗୀତାଟା କପରି ଦିଶିବ ? ଭଲ ଲୁଗା ଖଣ୍ଡେ ନାହିଁ । ଗହଣା ଗଣ୍ଡି ନାହିଁ । ଆଖିରେ ଦି ଧାର କଜଳ ତାର ସମ୍ବଳ ।

ମୋର ରୂପଗୁଣର ପରୀକ୍ଷା ହେବ । ବଧୂବାବୁଙ୍କ ପୁଅ ପ୍ରବୋଧବାବୁ । ତାଙ୍କର ରୂପଗୁଣର ପରୀକ୍ଷା ହେବନାହିଁ । ପୁଅ ହୋଇ ସେ ଜନ୍ମ ହୋଇଛନ୍ତି । ତେଣୁ ତାଙ୍କର ସବୁ ଭଲ ବୋଲି ଗ୍ରହଣ କରିନେବାକୁ ହେବ । ପୁରୁଷ ପିଲାର ସବୁ ସୁନ୍ଦର । ଭଲ ମନ୍ଦ ଯାହା କଲେ ସବୁ କ୍ଷମଣୀୟ । ପୁରୁଷ ପିଲାର ମନ ଅଛି, ସାର ଅସାର କରିବାର ଅଧିକାର ଅଛି, ଆମର ନାହିଁ ।

ଅନ୍ତ ନିଉଁଛୁଣା ଆମର ଝିଅ ଜନମ । ଜୀବନ, ମନ, ଆଗ୍ରହ, ଉତ୍ତେଜନା ଧରି ଆତଯାତ ହେଉଥିଲେ ବି ଆମେ ନିର୍ଜୀବ କାଠ କୁଣ୍ଢେଇ । ଯେଉଁଠି ଥୋଇବ ସେଇଠି ରହିବୁ । ଯେପରି ନଚାଇବ ସେପରି ନାଚିବୁ । ସହିବାକୁ ଆମ ଜନମ । ବାଧା ଦେଇ କହିବାକୁ କ୍ଷମତା ନାହିଁ ।

## —ଅଠର—

ଆହୁରି କେତେଦିନ ବିତିଗଲା । ବାପାଙ୍କ ପାଖରୁ ଧବଳେଶ୍ୱର ଯିବାକୁ ଚିଠି ଆସିଲା ନାହିଁ । ବୋଉ ଭାବନାରେ ପଡ଼ିଥାଏ । ବାପାଙ୍କର ଦେହପାରି ଖବର ଜାଣିବାକୁ ଉଦ୍‌ବିଗ୍ନ ହୋଇ ରହିଥାଏ । ଧବଳେଶ୍ୱର ଯିବା କଥା ତୁଣ୍ଡରେ ଧରେ ନାହିଁ ।

ମୋ ମନରେ ତଥାପି ଆଶା ଥାଏ, ନିଶ୍ଚୟ ଧବଳେଶ୍ୱର ଯିବାକୁ ଚିଠି ଆସିବ । ସୁବିଧା ଅସୁବିଧା ଦେଖି ବାପା ଲେଖିବେ । ଆଗରୁ ଗୁନିଆଁ ହେବା ଉଚିତ ନୁହେଁ । ମୁଁ ଆଶାରେ ଅସ୍ଥିର ହୋଇ ବେଳ କାଟେ । ମୋର ଯେତିକ ଅଛି ସେତିକରେ ନିଜକୁ ସଜାଇବାକୁ ଚେଷ୍ଟା କରେ । ଅଇନାରେ ନିଜର ରୂପ ଦେଖି ମନକୁ ହସେ, ପୁଣି ଗମ୍ଭୀର ହୁଏ । ଦେଖେ, ଆଉ କେତେ ଝିଅ ବୋହୂଙ୍କ ମୁହଁ ମନେପକାଇ ତୁଳନା କରେ । ମୋ ବିବେଚନାରେ ମୁଁ ହୁଏ ସବୁଠୁଁ ସୁନ୍ଦରୀ । ଖୁସି ହୁଏ, ବାପା ଲେଖିଥିଲେ, ବିଧୁବାବୁଙ୍କ ସ୍ତ୍ରୀ ସୁନ୍ଦରୀ । ତାଙ୍କର ଆଖିକି ସୁନ୍ଦର ଦିଶିବାର ଉପଯୁକ୍ତ ମୁଁ ? ମୋଠୁଁ ବଳି କେତେ ସୁନ୍ଦରୀ ଝିଅ ତ କଟକରେ ଥିବେ, ସେ ଦେଖିଥିବେ ।

ସବୁଗ ମଉଳିଯାଏ ।

ବୋଉ କହନ୍ତି, ମଣିଷ ଯିବା ଟାଣି ଓଟାର ହୁଏ, ପଛରେ କାହାର ଅଦେଖା ହାତ ତାର ଭାଗ୍ୟର ଡୋର ଧରି ଠିଆ ହୋଇଥାଏ । ନିରୁପମା ଏବେ କେଉଁ ସୁନ୍ଦର ! ରଙ୍ଗ କମ୍ । ବେକ ଛଡ଼ା । ନାକ ଚେପ୍ଟା । ସେ ପୁଣି ତାର ଶାଶୁଘର ଆଖିକି ଏତେ ସୁନ୍ଦର ଦିଶିଲା । ଧନ୍ୟ ଧନ୍ୟ ପ୍ରଶଂସାର ଝୁରି ପଡ଼ିଗଲା । ଆଉ ଅରୁନ୍ଧତୀ, ନବରଙ୍ଗ ଗାଁରେ ତା ପରି ରୂପର ଝିଅ ଜନ୍ମହୋଇ-ନାହାନ୍ତି । ବୋଉ କେତେଥର କହେ । ଆଉମାନେ ବି କହନ୍ତି । କେତେ ବଡ଼ ଘରେ ସମ୍ବନ୍ଧ ଲାଗିଥିଲା । ସେମିତି ଗୋଟାଏ ଆଗରେ କଟକ ଗଲେ ଝିଅ ଦେଖାଇବାକୁ । ବାହାଘର ଭାଙ୍ଗିଗଲା । ପାନ୍ଧୀ କୁଆଡ଼େ ବରଘର ଆଖିକୁ ସୁନ୍ଦର ଦିଶିଲା ନାହିଁ । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଅରୁନ୍ଧତୀର କଅଣ ଅସୁନ୍ଦର, କେହି କହି-ପାରିଲେ ନାହିଁ । ତଥାପି; ସେ ହେଲା ଅସୁନ୍ଦର !

ଭାଗ୍ୟ !

ସତରେ ଏକା ଅଜଣା ଭଗବାନ, ଅଦେଖା ଭାଗ୍ୟ ଉପରେ ନିର୍ଭର କଲେ ମଣିଷର ମନରେ ସାନ୍ତ୍ୱନା ଆସେ । ସବୁ ଭୁଲ, ଭ୍ରାନ୍ତି, ଦୁଃଖଦୁର୍ଦ୍ଦଶା ଭାଗ୍ୟର ଫଳ ବୋଲି ଗ୍ରହଣ କଲେ ମଣିଷ ଶାନ୍ତି ପାଏ ।

ଯେତେ ଯାହା ଭାବିଲେ ବି ମନ ମୋର ଦୋହଲିଉଠେ । ଗୋଟାଏ ଅନାଗତ ଅନିଶ୍ଚିତ ପରୀକ୍ଷାର ଫଳ ପାଇଁ ଛାତିର ଦମ୍ଭ ଚହଲିଯାଏ । ଧୈର୍ଯ୍ୟ ଉଚାଟ ହୁଏ ।

## — ଊଣେଇଶ —

ଦିନେ ସଞ୍ଜବେଳେ ଦାମଭାଇ ଆମ ଘରକୁ ଆସିଲେ । ଅନ୍ଧାରଆ ହୋଇଥାଏ ବାହାରେ । ଶୋଷଘରେ ବୋଉ ଘାତ ବାନ୍ଧୁଛି । ତା ପାଖରେ ବସି ମୁଁ ପଢ଼ିବା ନାଟୁଛି । ସେ ଆସି ବୋଉ ପାଖରେ ବସିଲେ । ମୋ ଆଡ଼କୁ ଥରେଟିଏ ଖାଲି ଅନାଇଥିଲେ ।

ବୋଉ କହିଲା, ପୁଅରେ, ତିନି ଦିନ ହେଲା କେମିତି ଖରାପ ଲାଗୁଛି, ମନ କେଉଁଠି ଲାଗୁନାହିଁ । ଚିଠି ଦେବେ ବୋଲି କହିଥିଲେ, ଆଜଯାଏ ଚିଠିପତ୍ର କି ପଇସା କଉଡ଼ିର ଦେଖା ନାହିଁ ।

ଦାମଭାଇ ଟିକିଏ ହସିଲେ । କହିଲେ, ଚିନ୍ତା କରିବାର କାରଣ ନାହିଁ ଖୁଡ଼ୀ, ହେଲେବାହିଁ ଗୁଡ଼ାଏ ଲୋକ । ଗାଁଟାର ବାହାଘର ସ୍ଥିର କରିବାକୁ ସେ ବ୍ୟସ୍ତ ଥିବେ । ବୋଧହୁଏ ସେ ଚିଠି ଦେଇଛନ୍ତି । ଡାକଘରେ ପଡ଼ିଛି । କାଲି ଡାକପାଳି । ଅପେକ୍ଷା କର, ଯଦି ଚିଠି ନ ଆସିଥାଏ, ତମେ ସବୁ ଚିଠି ଲେଖି ଅମୁ ହାତରେ ଦେବ । କାଲି ଉପରବେଳା କଟକ ଯିବ ବୋଲି ଅମୁ କହୁଥିଲା । ସେ ନ ଗଲେ ମୁଁ ନିଜେ ଯିବି । ସବୁ ଖବର ବୁଝିଆସିବି ।

ବୋଉ ପଚାରିଲା, ଅମୁ କାମ ପାଇଲା କି ? ଏଇ ଗାଁରେ ଅଛି, ଟିକିଏ ଏଣେ ଆସିବାକୁ ତାକୁ ବେଳ ମିଳୁନାହିଁ ?

ଦାମଭାଇ କହିଲେ, ସେଇଟା ନିର୍ବୋଧ, ଅପଦାର୍ଥ, ଘାସକୁ ଟେଙ୍ଗଟ, ପାଳକୁ ଲମ୍ବ । ସେ କି କାମ କରିବ ? ବରଂ ଅଳଟି

ମୂଲିଆ ହେଉ, ମୂର୍ଖ ହେଉ; ପରଦୁଃଖରେ ନ ଥାଏ, କି ସୁଖରେ ନ ଥାଏ। ବିନଗଣ୍ଡି କାମରେ ଲଗିଥାଏ। ଅମୁ ସେ ବାବୁ। ଏଣେ ପଛେ ପେଟ ହାକୁ ହାକୁ ଜଳୁଥାଉ, କିଛି କିଛି ଯିବ ଯିବ ବୋଲି, ମୁଁ ଦେଖୁଛି, କେତେଦିନ ଏ ଗାଁରେ ଅଲସୁଆ ହୋଇ ବସିଛି। ଆକଟ କରି ପଢ଼େଇ କହିବାକୁ ମନ ହେଉଛି; ପୁଣି ଭାବୁଛି, କି ଥାଏ ଆମର ?

ବୋଉ କହିଲା, ପୁରୁଷ ପିଲା ଉଦ୍‌ଯୋଗୀ ନ ହେଲେ ନଉଁଛୁଣା।

ଦାମଭାଇଙ୍କ କଥା ଓ ବୋଉର ଟିପ୍‌ପଣୀ ମୋତେ ଖରାପ ଲଗିଲା। ଅମୁଭାଇ ଭଲ ହେଉ, ମନ୍ଦ ହେଉ, କେବେ କାହା ଘରେ ମୁଠିଏ ଭାତ ପାଇଁ ହାତ ପତାଇ ନାହିଁ। ନିଜ ଦୁଃଖରେ ସେ ଅଛି। ସଂସାରରେ ମୁଣ୍ଡ ଟେକି ଠିଆ ହେବାକୁ ସେ ତାର ଉଦ୍ୟମ ବଳେ କରିବ। ଅନ୍ୟମାନଙ୍କର ଅଲଣା ସମାଲୋଚନାରେ ତାର ଲାଭ କି କ୍ଷତି ହେବ ନାହିଁ। ନିଜେ ଦାମଭାଇ କେଉଁ ଗୁଣରେ ତା ଠାରୁ ବଡ଼ ? କି କାମ କରି କଅଣ ସେ ଉପାର୍ଜନ କରୁଛନ୍ତି ?

ମୋର ପରିବା କଟା ସରିଥିଲା। ଆଉ ଘରକୁ ଉଠିଗଲି। ନାଲିଟଣ ଦେଇ ସେହି ପୁରୁଣା ଗପ ବହିଟି ପଢ଼ିବାକୁ ଚେଷ୍ଟା କଲି। ଦାମଭାଇ ବୋଉ ସଙ୍ଗେ କଥାବାର୍ତ୍ତା ହୋଇ ଫେରି ଯାଉଥିଲେ। ମୁଁ ଘରେ ଥାଇ କହିଲି, ତମର ତ ଆଜିକାଲି ଦେଖା ଦର୍ଶନ ନାହିଁ, ଦାମଭାଇ !

ସେ ଘରଭିତରକୁ ପଶିଆସି ଥଣ୍ଡାଳିଆ ସ୍ୱରରେ କହିଲେ, ସେଥିପାଇଁ ବୋଧହୁଏ ତୋତେ ଭାତ ରୁଚୁ ନ ଥିବ।

ରାଗ ହେଲା । ତାଙ୍କ ମୁହଁକୁ ନ ଚାହିଁ କହିଲି, ଆମେ ଗରିବ, ଆମକୁ ଭାତ ମିଳେ ନାହିଁ । କୋଳଥ ମାଣ୍ଡିଆ ଆମର ଆହାର । ସେଇଆ ଆମକୁ ରୁଚେ ।

କହିଲେ, ଏବେ ଖିରି ପୁରି ସ୍ୱପ୍ନ ଦେଖୁଥିବୁ ଲୋ ! ହଉ, ଠାକୁରେ ତୋର ମଙ୍ଗଳ କରନ୍ତୁ । ଭଲରେ ନ ହେଲେ ମନ୍ଦରେ ବେଳେବେଳେ ତୋର ମନେ ପଡ଼ିବ । ତୁଣ୍ଡରେ ନାମ ନ ଧରିଲେ ବି ମୁଣ୍ଡଭିତରୁ ତ ପୋଛିପାରିବୁ ନାହିଁ ।

ଏତିକି କହି ସେ ବାହାରିଗଲେ । ପଛରୁ ଡାକି କହିଲି, ପାନ ନେଇଯାଅ ଦାମଭାଇ ।

ପଦାରୁ କହିଲେ, ଯାଚିବାକୁ ତୋର ମନ ହେଲା, ସେଇଥିରୁ ତୋର ସ୍ନେହ ଜଣାଗଲା ଯେ । ପାନ ନେଲେ ଅଧିକ ହେବ ନାହିଁ । କାମ ଅଛି, ଯାଉଛି ।

ସେ ଚାଲିଗଲେ ।

ମନକୁ ମନ କହିହେଲି, ନିର୍ବୋଧ !

ହସ ମାଡ଼ିଲା । ଚାହିଁ ଚାହିଁ ସପନ ଦେଖିଲି, ବାପା ଖୁସି ହୋଇ ଚିଠି ଲେଖିଛନ୍ତି, ସବୁ ସ୍ଥିର ହୋଇଗଲା । ଦିନ ବାର ଠିକଣା ହେଲା । ପ୍ରବୋଧବାବୁ ଶିକ୍ଷିତ । କହିଲେ, ଦେବାନେବା କଥା ଉଠିବ ନାହିଁ । ଝିଅକୁ ଦେଖିବା ଲୋଡ଼ା ନାହିଁ । ତାଙ୍କ ବାପ ମା ମଙ୍ଗିଲେ । ଖୁସି ହେଲେ । ବାହାଘରର ଆୟୋଜନ କରିବାକୁ ଦିନେ ଦୁଇଦିନ ଭିତରେ ମୁଁ ଗାଆଁକୁ ଯାଉଛି—

ବୋଉର ଡାକରେ ମୋର ସପନ ଭାଙ୍ଗିଲା ।

—କୋଢ଼ିଏ—

ପରଦିନ ସକାଳେ ଅମରଭାଇ ଆସିଲେ । ବୋଉ ଘରଧନ୍ଦାରେ ବ୍ୟସ୍ତ ଥାଏ । କହିଲା, ଅମୁକୁ ପାନ ଦେ ଗୀତା ! ମୁଁ ପାଣି ବଟା ଭିତରକୁ ନେଇଆସେ ।

ଅଧା ଅଙ୍ଗ ହୋଇ ପିଣ୍ଡାରେ ବିଛଣା ପକାଇଦେଲି । କହିଲି, ବସନ୍ତୁ ।

ସେ ଆସି ବସିଲେ । ମୁଁ ପାନ ଭାଙ୍ଗି ଗୋଟିଏ କାଚ ଥାଳିଆରେ ପାଖରେ ରଖିଲି । ଉଠିଯାଇ ଘରଭିତରେ ଦୁଆର-ବନ୍ଧକୁ ଆଉଜି ଠିଆ ହେଲି । ଆଶା କରିଥିଲି, ସେ କଣ ପଚାରିବେ । କିନ୍ତୁ ସେ କିଛି କହିଲେ ନାହିଁ । ତାଙ୍କୁ ସଙ୍କୋଚ ଲାଗିଲା ପରା ! କେଜାଣି, ମୋ ସଙ୍ଗେ କଥାଭାଷା କରିବାକୁ ସେ ଅନୁଚିତ ମନେକଲେ ।

ମୁଁ ଟିକିଏ ଅପେକ୍ଷା କରି ବାରିଆଡ଼କୁ ଚାଲିଗଲି । ଦେଖିଲି, ବୋଉ ପାଣି ଆଣିବା ବାହାନାରେ ଶାଗ ତୋଳୁଛି । ମତେ କିଛି ନ କହି ସେ ଭିତରକୁ ଆସିଲା । ମୁଁ ତାର ପଛେ ପଛେ ଆସିଲି । ବୋଉ ପଚାରିଲା, ଅମୁ, ତୁ ଆଜି କଟକ ଯାଉଛୁ ?

ସେ କହିଲେ, ଉପରଓଳି ଯିବି, ନୋହିଲେ କାଲି ସକାଳେ ।

ବୋଉ କହିଲା, ଯିବା ଆଗରୁ ଇଆଡ଼େ ଆସିବୁ । ତୋ ହାତରେ ତାଙ୍କ ପାଖକୁ ଖଣ୍ଡେ ଚିଠି ଦେବି । ଶୁଣା ପୁଅଟା ପରା ।

ଅମୁଭାଇ ସମ୍ମତ ଜଣାଇଲେ । ବୋଉ ସଙ୍ଗେ ଏଣୁ ତେଣୁ କେତେ କଥାଭାଷା ହେଲେ । ବାହାଘର ବିଷୟ ପଡ଼ିଲା । ବାପାଙ୍କର ପତ୍ର, ପ୍ରବୋଧବାବୁଙ୍କ ସମ୍ବନ୍ଧ । ଅମୁଭାଇ ଖୁସି ହେଲେ । କହିଲେ, ଠାକୁରଙ୍କର ଦୟା ଥିଲେ ଏ ସମ୍ବନ୍ଧ ନିଶ୍ଚୟ ସ୍ଥିର ହେବ । ଗୀତା ଯେପରି ସୁନ୍ଦର, ଯେପରି ସୁଧୀର, ନିରୀହ, ନିଷ୍କପଟ, ସ୍ନେହୀ, ଭଗବାନ ତାକୁ ଉପଯୁକ୍ତ ପାତ୍ର ଅବଶ୍ୟ ଦେବେ ।

ସେ ଚାଲିଗଲେ । ବୋଉ କାମରେ ଲାଗିଲା ।

ମୁଁ ମୋର ପୁରୁଣା ଗପ ବହିଟି ଖୋଲି ଭାବି ବସିଲି, ଆହା ଭାଇ ଭଉଣୀ ସଂସାରରେ ମୁଣ୍ଡ ଟେକି ବାଟ ଚାଲିବାକୁ ପରିଶ୍ରମ କରୁଛନ୍ତି । ଗରିବ ସେମାନେ, ଆମପରି । ଗରିବର ଆଶାଲତାଟି ଫଳ ଫଳିବା ଆଗରୁ ସୁଯୋଗ ଅଭାବରୁ ମାଟିରେ ଲୋଟେ । କେତେ କଅଣ କରିବାକୁ ସେ ଆମ୍ଭୁଡ଼ି ହୁଏ । ହତାଶ ହୋଇ ଶୂନ୍ୟକୁ ଚାହେଁ । ଦୀର୍ଘଶ୍ୱାସ ଛାଡ଼ି ଥରଥରିକା ପଛକୁ ଫେରେ । ନୂଆ କାମରେ ହାତ ଦିଏ । ହେବ ବୋଲି ଭରସା ନ ଥାଏ ।

ଅମୁଭାଇଙ୍କର ସୁନ୍ଦର ଶାନ୍ତ ମୂର୍ତ୍ତିଟି ଆଖି ଆଗରେ ଠିଆ ହୁଏ; କିନ୍ତୁ ପୂର୍ବପରି ମନ ଉଛୁଳିପଡ଼େ ନାହିଁ । ଦୁଃଖର ସଂସାର, ସେହି ଦୁଃଖ ଜଞ୍ଜାଳରେ ଆଜୀବନ ଘାଣ୍ଟି ହେବାକୁ ମନ ଡାକେ ନାହିଁ; ଡର ମାଡ଼େ ।

## —ଏକୋଇଶି—

**ବୋଉ** ଆସି କହିଲା, ଝିଅ ଲୋ, କାଗଜ କଲମ ଆଣି ବାପା ପାଖକୁ ଖଣ୍ଡେ ଚିଠି ଲେଖେ । ଅମୁ ଆଜି କଟକ ଯାଉଛି,

ଡା ହାତରେ ଦେବା । କେତେଦିନ ହେଲା ବେଉସା ଦେଇ-ନାହାନ୍ତି ।

ମୁଁ ଖଣ୍ଡେ କାଗଜ ଓ ଦୁଆତ କଲମ ଆଣିଲି । ବୋଉ ଡାକିଲା, ମୁଁ ଲେଖିଲି—ଦେହର ହାଲଚାଲ ଲେଖିବ । ଚିଠି ନ ପାଇ ବ୍ୟସ୍ତରେ ଅଛୁ । ଧବଳେଶ୍ୱର ଯିବା କଥା କଅଣ ହେଲା ? ମୁଁ ଗୋଡ଼ ଟେକି ବସିଛୁ । ସେମାନଙ୍କଠାରୁ ବୁଝି ଲେଖିବ । ପଇସାକଉଡ଼ି ହାତରେ ନାହିଁ । ଯଦି ଦରମା ପାଇଥାଅ କିଛି ପଠାଇବ । ଦିନକ ପାଇଁ ହେଲେ ନିଶ୍ଚୟ ଥରେ ଆସିବ ।—

ଚିଠିଲେଖା ଅଧା ହୋଇଛି, ଦାଣ୍ଡ କବାଟ ଠେଲି ଅମୁଭାଇ ଫେରିଆସିଲେ । ହାତରେ ଖଣ୍ଡେ ଲଫାପା ଧରିଛନ୍ତି । ମୁଁ ଚିଠି ଲେଖା ବନ୍ଦ କରି ମୁଣ୍ଡ ଉପରକୁ ଓଢ଼ଣା ଟାଣିଲି । ବୋଉ ପଚାରିଲା, କଅଣ ରେ ଅମୁ ?

ଅମୁଭାଇ କହିଲେ, ପୋଷ୍ଟପିଅନ୍ ସଙ୍ଗେ ବାଟରେ ଦେଖା ହେଲା । ସେ ଏ ଚିଠିଖଣ୍ଡି ଦେଇଛି । କହିଲା, ତିନି ଦିନ ହେଲା ଆସିଲଣି । କେହି ଲୋକ ଆସୁ ନ ଥିଲେ ବୋଲି ପଠାଇ ପାରିନାହିଁ ।

ବୋଉର ଓଠରେ ହସ ଖେଳିଗଲା । ଚିଠିଖଣ୍ଡି ଆଗ୍ରହରେ ଅମୁଭାଇ ହାତରୁ ଆଣି ଏପାଖ ସେପାଖ ଓଲଟାଇ କଅଣ ଭାବିଲା । ବୋଧହୁଏ ଭାବିଲା, ମୋତେ ଦେବ କି ନାହିଁ । ଶେଷକୁ ଅମୁଭାଇ ହାତକୁ ବଢ଼ାଇଦେଇ କହିଲା, ପଢ଼ ତ ବାପ ।

ବୋଉର ଉଦ୍ଦେଶ୍ୟ ବୁଝିପାରିଲି । ଚିଠିରେ ନିଶ୍ଚୟ ମୋ ବାହାଘର କଥା ଲେଖାଥିବ ଜାଣି ମୋତେ ପଢ଼ିବାକୁ ଦେଲାନାହିଁ ।

ମୁଁ ବି କିଛି ନ ଜାଣିଲା ପରି କବାଟ କରକୁ ଘୁଞ୍ଚିଆସିଲି । ଉତ୍ତେଜନାରେ ଛାତିଟା ଥରିବାକୁ ଲାଗିଲା । ବାପା ଚିଠି ଲେଖିଛନ୍ତି । ତାଙ୍କର ଆଶା ଠାକୁରେ ପୂରଣ କରିଛନ୍ତି ପରା ! ବିଧୁବାବୁ ବୋଧ୍ହୁଏ କରିବାକୁ ମଙ୍ଗିଲେ । ଗୀତାର ହେବ ବାହାଘର, ପ୍ରବୋଧବାବୁଙ୍କ ସଙ୍ଗରେ ! ବାପମାଆଙ୍କୁ ଛାଡ଼ି ସେ ଚାଲିଯିବ ପର ଘରକୁ ।

ଅବାଧ ଲୁହ ଦୁଇ ଆଖିରେ ପୂର୍ଣ୍ଣ ହେଲା ।

—ବାଇଶି—

ଅନୁଭାଇ ଚିଠି ପଢ଼ିବାକୁ ଆରମ୍ଭ କଲେ ।

—ଗୀତା, ତୁମର ବାପାଙ୍କ କହିବା ମତେ ଏ ଚିଠି ଲେଖୁଛି । ଆଜକୁ ତିନି ଚାରି ଦିନ ହେବ ସେମଳବାବୁଙ୍କୁ ଜର ହୋଇଥିଲା । ଦେହ ହାତ ତରଳ ହୋଇଥିଲା । ସ୍କୁଲର ପିଲା-ମାନେ ଓ ମୁଁ ନିଜେ ଦିନରାତି ଜଗି ବସି ତାଙ୍କର ସେବା ଶୁଶ୍ରୂଷା କରିଥିଲୁଁ । କାଲିଠାରୁ ସେ ବେହୋସ ହୋଇପଡ଼ିଲେ । ବାଧ୍ୟ ହୋଇ ତାଙ୍କୁ ଡାକ୍ତରଖାନାକୁ ନେଲୁଁ । ଆଜି ତାଙ୍କର ଦେହ ଟିକିଏ ଭଲ ଅଛି । ଜର ସାମାନ୍ୟ କମିଛି । ଜ୍ଞାନ ଫେରିଛି । ଡାକ୍ତରମାନଙ୍କ ମତରେ ଭୟର କାରଣ ନାହିଁ । ତମମାନଙ୍କୁ ଦେଖିବାର ତାଙ୍କର ଇଚ୍ଛା । ତମେମାନେ ଶୀଘ୍ର ଆସିବ । ରହିବାର ଅସୁବିଧା ହେବନାହିଁ । ମୋ ବସା ପିଛିଣି ସାହିରେ । ସେଇଠି ପହଞ୍ଚିଲେ ସୁବିଧା ହେବ ।

ଚଠି ଲେଖିଛନ୍ତି ସ୍କୁଲର ବଡ଼ ଶିକ୍ଷକ ଶରତ୍‌ ବାବୁ । ଅବିଶ୍ୱାସ କରିବାର କାରଣ ନାହିଁ ।

ବୋଉ ଥକ୍‌କା ହୋଇ ବସିପଡ଼ିଲା, ସତେ କି ତାର ଦେହରେ ପ୍ରାଣ ନାହିଁ । ମୁଁ ଘରଭିତରୁ ବାହାରି ଆସିଲି । ଅମୂଭାଇଙ୍କ ହାତରୁ ଚିଠିଖଣ୍ଡି ଟାଣିଆଣି ମନେ ମନେ ଆଉ ଥରେ ପଢ଼ିଲି । ଅବିଶ୍ୱାସର କଥା ନାହିଁ । ମୋତେ ଦୁନିଆଁ ଅନ୍ଧାର ଦିଶିଲା । ବାପା ମୋର ବେମାର ପଡ଼ିଛନ୍ତି ବିଦେଶରେ, ଡାକ୍ତରଖାନାରେ । ପାଖରେ ନିଜ ଲୋକ କେହି ନାହାନ୍ତି । ହତାଶ ଲାଗୁଥିବ । ପ୍ରାର୍ଥନା କଲି ଠାକୁରଙ୍କୁ, ବାପାଙ୍କୁ ମୋର ଆରୋଗ୍ୟ କରିଦିଅ ଭଗବାନ, ମୋର ଜୀବନ ମୁଁ ତମ ପାଖରେ ପାଣି ଛଡ଼ାଇ ଦେଉଛି । ମୋ ଆଖିରୁ ଗଳଗଳ ଲୁହ ଝରିପଡ଼ିଲା ।

ଅମୂଭାଇ ସାନ୍ତ୍ୱନା ଦେବାକୁ କହିଲେ, ଡାକ୍ତରଖାନାରେ ରୋଗୀଙ୍କର ବିଶେଷ ଯତ୍ନ ନିଆଯାଏ । ଭୟର କାରଣ ନାହିଁ । ହୁଏତ ତାଙ୍କର ଦେହ ଭଲ ହୋଇଗଲାଣି ।

ବୋଉ ଦୀର୍ଘନିଶ୍ୱାସ ପକାଇ କହିଲା, ଗୀତା, ଗୃହେଁ ବସିଲେ ହେବ ନାହିଁ । ଯେତେ ଶୀଘ୍ର ସମ୍ଭବ କଟକ ଯିବାର ଯୋଗାଡ଼ କରିବା ଦରକାର ।

ସେ ଆଖିରୁ ଲୁହ ପୋଛୁଥିଲା ।

ମୁଁ କହିଲି, ହଁ ବୋଉ, ଯିଏ ଯେତେ ସେବା ଯତ୍ନ କଲେ ବି ପର । ଆପଣା ମଣିଷଙ୍କ ପରି ମନ ଜାଣି କରିପାରିବେ ନାହିଁ । କଟକ ଯିବା କିପରି, କାହା ସଙ୍ଗରେ ?

ବୋଉ ମୋ କଥାର ଉତ୍ତର ନ ଦେଇ ଅମୁଭାଇଙ୍କୁ କହିଲା, ବାପ, ନଡାର ତ ଯିବାର କଥା, ଆଜି ଆମ ସଙ୍ଗେ ଗଲେ ଭଲ ହୁଅନ୍ତା । କେତେ ଉପକାର କରନ୍ତୁ ରେ !

ଅମୁଭାଇ ଆପତ୍ତି କଲେ ନାହିଁ । କଟକ ଯିବା ସମ୍ବନ୍ଧରେ ଏଣୁତେଣୁ କଥାବାର୍ତ୍ତା କରି ସେ ଚାଲିଗଲେ । ବୋଉ ତାଙ୍କରି ହାତରେ ରଘୁ ପାଖକୁ ଖବର ପଠାଇଲା ।

ଘଣ୍ଟାକ ପରେ ରଘୁ ଆସିଲା । ସେତେବେଳକୁ ବନ୍ଧାବନ୍ଧି କରି ଆମେ ପ୍ରସ୍ତୁତ ହୋଇସାରିଲୁଣି ।

ରଘୁକୁ ସବୁ କଥା ଶୁଣାଇଁ ବୋଉ କହିଲା, ଆମେ ଯିବାକୁ ସଜ ହୋଇଛୁ, ହାତରେ ପଇସା ନାହିଁ କି ଗାଡି ଠିକ୍ ହୋଇ-ନାହିଁ । ତୋଓର ଭରସାରେ ରହିଛୁ । ଏ ଥାଳି ପଟକ ନେଇ ଯା, କେଉଁଠି ବନ୍ଧା ପକାଇ ଟଙ୍କା ଦି ତିନିଟା ମୋତେ ଏହିକ୍ଷଣି ଆଣି ଦେ । ଘାନାକୁ କହିଲେ ତା'ଆରି ଗାଡ଼ିରେ କଟକ ଯିବୁ । ଯାହା ଭଡ଼ା ନେବାର ସେ ନେବ ।

ରଘୁ କହିଲା, ଟଙ୍କା ଦି ତିନିଟା ପାଇଁ ଥାଳି କଂସା ବନ୍ଧା ପକାଇବା ଦରକାର ନାହିଁ । ତମଠି କାହାରି ଟଙ୍କା ବୁଡିଯିବ ନାହିଁ । ତମର ସେ ବିଷୟରେ ଚିନ୍ତା କରିବା ଦରକାର ନାହିଁ । ମୁଁ ସବୁ ଠିକଣା କରିଦେବି । ଯାଉଛି ।

ରଘୁ ଚାଲିଲା ।

ଦିନ ଦୁଇଟା ବାଜିଲା । ରଘୁ ସବୁ ବନ୍ଦୋବସ୍ତ କରି-ଦେଇଥାଏ । ବାଟେ ଫଳମୂଳ କିଣିବାକୁ ଦରକାର ହେବ ବୋଲି ହାତରେ ଅଧିକ ପାଞ୍ଚ ଟଙ୍କା ଦେଇଥାଏ । ଘାନା ବଳଦଗାଡ଼ି ନେଇ

ଡାଣ୍ଡକୁ ଆସିଲ । ଘଧା ଜମା ଘର ଦେଇ ବୋଉ ଓ ମୁଁ ଗାଡ଼ିରେ ବସିଲୁଁ । ଅମୁଭାଇ ମଧ୍ୟ ଆମର ପାଖରେ ବସିଲେ ।

ଗାଡ଼ି ଗ୍ଳଲ ।

ଆଖିରୁ ଲୁହ ପୋଛିଲି । କଟକ ଯାଉଛି, ଧବଳେଶ୍ୱର ମହାଦେବଙ୍କ ଦର୍ଶନ ପାଇଁ ନୁହେଁ, ବାପାଙ୍କ ରୋଗଶଯ୍ୟା ପାଖରେ ଜଗିବସି ତାଙ୍କର ସେବା କରିବାକୁ । ସୁଖରେ ନୁହେଁ, ଦୁଃଖରେ । ଦଇବ ମଣିଷର ସବୁ କଥାକୁ ଏମିତି ଓଲଟ ପାଲଟ କରିଦିଏ । ମନେ ମନେ ତାଙ୍କରି ଉଦ୍ଦେଶ୍ୟରେ ପ୍ରଣାମ କଲି । ମାଗୁଣି କଲି, ମୋ ବାପାଙ୍କର ଦେହ ଭଲ କରିଦିଅ ଠାକୁରେ, ଏଇ ଗୋଟିଏ ମୋର ମାଗୁଣି । କଟକରେ ପହଞ୍ଚି ମୋ ବାପାଙ୍କର ହସ ମୁହଁ ଦେଖେଁ । ତାଙ୍କର ଗେହ୍ଲାଳିଆ ଡାକ କାନରେ ଆଗ ବାଜୁ, ମା ଗୀତା—

## —ଚେଉଣି—

ଆମ ଗାଁରୁ କଟକ ଯିବାକୁ ଦୁଇଟି ବାଟ । ଗମ୍ଭୀର ମଝିରେ ଶଗଡ଼ ଗୁଳା ଧରି ଗଲେ ନଣ୍ଟକୂଳଯାଏ ବାଟ ସାତ କୋଶ । ଗାଁ-ଗମ୍ଭୀର ପାରି ହୋଇ ଗୋପ ରାସ୍ତାରେ ଫୁଲନଖର ବାଟେ ଗଲେ ନ କୋଶ ବାଟ ପଡ଼େ । ଗୋପ ରାସ୍ତା ବାଲିଆ । ଗାଡ଼ିବାଲ ଘନା ଗମ୍ଭୀର ବାଟରେ ଗାଡ଼ି ଚଳାଇଲା ।

ପହିଲା ପୁଷ । ବିଲରେ ଭଲ ହୋଇ ଶଗଡ଼ଗୁଳା ଛିଣ୍ଡି ନ ଥାଏ । ଗାଡ଼ି ପଡ଼ି ଉଠି ଧଡ଼ ଧଡ଼ ହୋଇ ଧୀରେ ଧୀରେ ଗ୍ଳଲ । ଦଣ୍ଡା ଧରିବାକୁ ଘନା ତାର ପୁତୁରା ଭଜନାକୁ ସାଙ୍ଗରେ ନେଇଥାଏ ।

ଗାଡ଼ିରେ ବସିଲା ବେଳରୁ ବୋଉ ଆଉ ପାଟି ଖୋଲିନାହିଁ । ମୁହଁଟି ତାର ଝାଉଁଳା ପଡ଼ିଥାଏ । କଅଣ କେତେ ଭାବୁଥାଏ । ସାହସ କରି ମୁଁ ତାକୁ କିଛି ପଚାରି ପାରିଲି ନାହିଁ । ମନେ ମନେ ପୁଣି ଠାକୁରଙ୍କୁ ଡାକୁଥାଏଁ, ଜଣାଣ କରୁଥାଏ, ହେ ଠାକୁରେ, ଆମେ ପହଞ୍ଚିଲାବେଳକୁ ବାପା ମୋର ଭଲ ହୋଇଥାଉନ୍ତୁ ।

ଜର ଟିକଏ ତ, କେତେ ଲୋକଙ୍କୁ ହୁଏ, ମୋତେ ବି କେତେଥର ହୋଇଛି, ଦିନେ ଦି ଦିନରେ ଭଲ ହୋଇଯାଏ । ସେମିତି ବାପାଙ୍କର ଜର ଭଲ ହୋଇଯାଇଥିବ । ଆମେ ସବୁ ବାପାଙ୍କୁ ସଙ୍ଗରେ ନେଇ ଫେରିଆସିବୁ ।

ଫେରିଆସିବୁ ? ଆଉ ଗୋଟିଏ ଭାବନା ମୁଣ୍ଡକୁ ଆସେ, ଧବଳେଶ୍ୱର, ପ୍ରବୋଧବାବୁ । ଛି, ସେ ସବୁ କଥା ଏଇଠୁଁ କାହିଁକି ? ଜୋର୍ କରି ବାରମ୍ବାର ଆଉଥିବା ଚିନ୍ତାକୁ ମନରୁ ତଡ଼ିଦିଏଁ ।

କାଲେ...! ଭୟରେ ଥରିଉଠେ ଛାତି । ଆକୁଳ ହୋଇ ଚାହେଁ ଥରେ ବୋଉ ମୁହଁକୁ, ଥରେ ଅମୁଭାଇଙ୍କ ମୁହଁକୁ । ମନରେ ସାହସ ଆସେ । ପୁଣି ଠାକୁରଙ୍କୁ ଡାକେଁ ମନେମନେ, ବାପା ମୋର ଭଲ ହୋଇଯାନ୍ତୁ ।

କେତେ ବାଟ ଚାଲିଆସିଲୁଣି । ଗହମ, ଡୋଟା, ମଶାଣି, ଗାଁ ଭିତର । ବାଟ ସରିବାକୁ ନାହିଁ । ଆହୁରି କେତେ ଦୂର ? ଗାଡ଼ିରେ ବସି ହଲି ହଲି ଦେହ ଅବଶ ଲାଗିଲା । ମୁଣ୍ଡ ଭିତରେ କେତେ ଚିନ୍ତା ଖେଳିଯାଉଥିଲେ ମଧ୍ୟ ଆଖି ମାଡ଼ି ମାଡ଼ି ପଡ଼ିଲା । ପଚାରିଲି, ଥାନା, କଟକ କେତେ ବାଟ ରହିଲା ? ସଞ୍ଜ ହେଲାଣି, ପହଞ୍ଚିବାକୁ ଆଉ କେତେ ଡେରି ଲାଗିବ ?

ଯାନା ପଛଆଡ଼କୁ ମୁହଁ ବୁଲାଇ କହିଲା, ବାଟ ଆଉ କେତେ କୋଶ ଥିବ, ରାତି ଦଶ ଘଡ଼ିକୁ ପହଞ୍ଚିଯିବା ।

ସଞ୍ଜ ହେଲା । ଗମ୍ଭୀର ମଝିରେ ନାଲଟେଣ ଲଗାଇ ଭଜନା ଆଗକୁ ଗଲା । ଗାଡ଼ି ଏଥର ଆହୁରି ମଠେଇ ମଠେଇ ଚାଲିଲା । ଚାରିକୁ ଆଉଜି ବୋଉ ଆଖି ବୁଜି ଘୁମାଉଥାଏ, କଅଣ ଭାବୁଥାଏ କି ମୁଁ ଜାଣେ ନାହିଁ ।

ଡାକିଲି, ବୋଉ, ବୋଉ ।

ବୋଉ ଜବାବ ଦେଲା ନାହିଁ । ଅମୁହଁଇ ଚେକା ପକାଇ ମୋ ପଛରେ ଟିକିଏ ଗୁଡ଼ିକରି ବସିଥାନ୍ତି । ତାଙ୍କୁ ଶୁଣାଇ କହିଲି, ବସି ବସି ଅଣ୍ଟା ବନ୍ଧିଲାଣି ।

ସେ ମୋ ମନକଥା ବୁଝିପାରିଲେ । ଗୋଟିଏ କଡ଼କୁ ଆଉଜିଗଲେ । କହିଲେ, ତୁ ଟିକିଏ ଶୋଇପଡ଼ । କଟକ ପାଖ ହେଲେ ଉଠାଇଦେବି ।

ପ୍ରତିବାଦ ନ କରି ତାଙ୍କର ଆଡ଼କୁ ମୁଣ୍ଡକରି ଶୋଇଲି । ଗାଡ଼ିରେ ହାତେ ବହଳରେ ପାଳକୁଟା ପରା ହୋଇଥାଏ । ତା ଉପରେ ପଡ଼ିଥାଏ ହେଁସ । ଦେହକୁ କାଟୁ ନ ଥାଏ । ଲୁଗାପଟା ଭଲକରି ଘୋଡ଼ି ହୋଇପଡ଼ିଲି । ଜାଣେ ନା, କେତେବେଳେ ନିଦ ହୋଇଗଲା ।

ଦେହ ଶୋଇ ପଡ଼ିଲେ ବି ମନ ସହଜରେ ଶୁଏ ନାହିଁ । ସୁଖଦୁଃଖର କେତେ ସପନପୁରରେ ବୁଲେ । କଅଣ ସପନ ଦେଖିଥିଲି ମୋର ମନେ ନାହିଁ । ଗାଡ଼ି ଗୋଟାଏ ଖାଲରେ ପଡ଼ିଲା । ଓଲଟିଲା ପରି ହେଲା । ଚମକି ପଡ଼ିଲି । ନିଦ ଭାଙ୍ଗିଗଲା ।

ଜାଣିଲି, ମୋ ମୁଣ୍ଡ କାହାର ଜଙ୍ଘ ଉପରେ । ଧୀରେ ଧୀରେ ଆଖି ଖୋଲିଲି । ଗାଡ଼ି ଭିତର ଅନ୍ଧାର । ବୁଝିଲି, ଅମୁଭାଇ ଗୋଡ଼ ଲମ୍ବାଇ ବସିଛନ୍ତି, ଆଉ ମୁଁ, ଛିଃ !

ଉଠି ବସିଲି । କାହାକୁ କିଛି କହିଲି ନାହିଁ । ମନକୁ ମନ ଲଜ୍ଜିତ ହେଲି । ଭାବିଲି, ଅମୁଭାଇ କଅଣ କହିବେ । କାହିଁ, ମୁହଁ ଖୋଲିଲେ ନାହିଁ ତ ! ବୋଧହୁଏ ସେ ବି ଘୁମାଉଥାଆନ୍ତି । ମନ ହେଲା, ପୁଣି ଥରେ ତାଙ୍କର ଜଙ୍ଘ ଉପରେ ମୁଣ୍ଡ ଦେଇ ଶୋଇ-ପଡ଼ିବି । କିନ୍ତୁ ଜାଣିଲେ ସେ ଚେଇଁଥିବେ, ଜାଣିଲେ କଅଣ ଭାବିବେ ?

ମୀନା କହିଲା, ଦେଖ୍‌ତ ଭଉଜ, ନଈ ସେପାରିରୁ କଟକର ଆଲୁଅ କେମିତି ସୁନ୍ଦର ଦିଶୁଛି ।

ମୁଁ ଡାକିଲି, ଅମୁଭାଇ, କଟକ ପାଖ ହେଲା, ଶୋଇଛ କି ?

ଅମୁଭାଇ ଜବାବ ଦେଲେ ସଙ୍ଗେ ସଙ୍ଗେ, ନା ।

ସେତିକିରେ ମୁଁ ଚୁପ ହେଲି । ଶୋଇନାହାନ୍ତି ? ଶୋଇ ନ ଥିଲେ ? ତେବେ, ତେବେ କେମିତି ମୋର ମୁଣ୍ଡଟା ତାଙ୍କର ଜଙ୍ଘ ଉପରକୁ ଗଲା ? ସେ କଅଣ—? ଉହୁଁ, ମୁଁ କଅଣ ଆଉ ନିଦ ବାଉଳାରେ—? କଅଣ ସେ ଭାବିଥିବେ ? ଭାଗ୍ୟକୁ ଗାଡ଼ିଭିତର ଅନ୍ଧାର ହୋଇଛି । ନୋହିଲେ ବୋଉ ଦେଖିଥାନ୍ତା ।

ଏମିତି କେତେ ଭାବୁଛି, କାଠଯୋଡ଼ି ନଈଭିତରକୁ ଗାଡ଼ି ଗଡ଼ିଲା । ସମସ୍ତେ ଆଗକୁ ଝୁଙ୍କିପଡ଼ିଲେ । ଛାଟକୁ ଧରିଲି । ବୋଉ କହିଲା, ଗୀତା, ସିଧା ହୋଇ ବସ୍, ଶୁଣୁନା । କଟକ ଆସି ହେଲା ।

କହିଲ, ମୁଁ ଶୋଇଛି କି ? କଥା ଅଧା ରହିଗଲା ।

ଅମୁଭାଇ କହିଲେ, ବଳଦଗାଡ଼ି, ଗମ୍ଭୀର ବାଟ । ସେଥିରେ କି ନିଦ ହେବ ?

ଭାବିଲି, ତେବେ ସେ ଜାଣନ୍ତି, ମୁଁ ବି ଶୋଇନାହିଁ । କେଜାଣି, ମୋତେ ଚଳାଇ କରି କହୁଛନ୍ତି । ଅମୁଭାଇ ଯେତେ-ବେଳଯାଏ ଆମ ପାଖରେ ରହିଲେ, ମୁଁ ଆଉ ମୁହଁ ଖୋଲିନାହିଁ ।

—ଚବିଶି—

ଗାଡ଼ି ପିଟିଣିସାହିରେ ପହଞ୍ଚିଲା । ଅମୁଭାଇ ତଳକୁ ଓହ୍ଲାଇ ପଚରାପଚରି କରି ଶରତ୍‌ବାବୁଙ୍କ ବସା ଠିକଣା କଲେ । ଗଳି ରାସ୍ତାଟି ବଙ୍କେଇ ବଙ୍କେଇ ସାହି ଭିତରକୁ ପଶିଛି । ରାସ୍ତାକଡ଼ରେ ଗୋଟିଏ ଟ୍ରେଟ ନୁଆଁଣିଆ ଚୂନ ଘର । ସେଇ ଘରଟି ଶରତ୍‌-ବାବୁଙ୍କର ।

ଆମେ ସବୁ ରାସ୍ତାଉପରେ ଗାଡ଼ି ଭିତରେ ଥାଉଁ । ଅମୁଭାଇ ଶରତ୍‌ବାବୁଙ୍କୁ ଡ଼ାକିଲେ । କବାଟ ଖୋଲି ବାପାଙ୍କ ବୟସର ଜଣେ ଭଦ୍ରଲୋକ ହାତରେ ନଳଟେଣି ଧରି ପଦାକୁ ଆସିଲେ । ଉଦ୍‌ବେଗ ହୋଇ ବୋଉ ଓ ମୁଁ ତାଙ୍କୁ ଚାହିଁରହିଲୁ ।

ଅମୁଭାଇ ପ୍ରଣାମ କରି କହିଲେ, ଭୋଳବାବୁଙ୍କର ପିଲାଏ ଆପଣଙ୍କ ଚିଠି ପାଇ ଗାଁରୁ ଆସିଛନ୍ତି ।

ଶରତ୍‌ବାବୁ କିଛି ଉତ୍ତର ଦେଲେ ନାହିଁ । ନଳଟେଣିଟି ତଳେ ରଖି କଅଣ ଯେପରି ଭାବିବାକୁ ଲାଗିଲେ । କେତେବେଳକେ ଅଟକେଇ ଅଟକେଇ କହିଲେ, ମୁଁ ବୃହସ୍ପତିବାର ହେଲା ଚିଠି ଦେଲିଣି, ଆଜି ସେମାନେ ଆସୁଛନ୍ତି ?

ତାଙ୍କର ଏପରି କଥା ଶୁଣି ଅଜଣା ଭୟରେ ଗୁଞ୍ଜ ଥର-ଉଠିଲା । ସେ ଆଜ କଅଣ କହିବେ ଶୁଣିବାକୁ କାନ ଡେରି ରହିଲୁଁ ।

ଅମୂଭାଇ କହିଲେ, ଗଠି ଖଣ୍ଡି ପୋଷ୍ଟ ଅଫିସରେ ଜିନ ଦିନ ପଡ଼ି ରହିବାରୁ ଡେରି ହୋଇଗଲା । ଆଜ ପାଇ ସଙ୍ଗେ ସଙ୍ଗେ ବାହାରି ଆସିଛନ୍ତି ।

ଶରତ୍‌ବାବୁ କହିଲେ, ଡେରି ହୋଇଗଲା ।

ଅମୂଭାଇ କହିଲେ, ଦିନ ଦଶଟାରୁ ବାହାରିଥିଲୁଁ । ବଳଦଗାଡ଼ି ଧୀରେ ଧୀରେ ଆସୁଛି । ଗଷ୍ପର ବାଟ । ତେଣୁ ଡେରି ହେଲା ।

ଶରତ୍‌ବାବୁ କହିଲେ, ହଁ, ହେବାର କଥା, ଦୂର ବାଟ । ଆଚ୍ଛା, ପିଲଙ୍କୁ ଭିତରକୁ ଆସିବାକୁ କୁହ ।

ଅମୂଭାଇ ଗାଡ଼ିପାଖକୁ ଆସି ବୋଉକୁ କହିଲେ, ବାବୁ କହୁଛନ୍ତି, ଭିତରକୁ ଆସ ।

ବୋଉ ଶରତ୍‌ବାବୁଙ୍କୁ ଶୁଣାଇଁ ଅମୂଭାଇଙ୍କୁ କହିଲା, ଡାକ୍ତରଖାନାକୁ ଯାଇ ତାଙ୍କୁ ଦେଖି ଆସିଲେ ଭଲ ହୁଅନ୍ତା । ମନ ଛଟ୍‌ପଟ୍ ହେଉଛି । ବାବୁଙ୍କୁ କହ, ଆମ ସାଙ୍ଗରେ ଜଣେ କାହାକୁ ଦିଅନ୍ତୁ, ଏଇ ଗାଡ଼ିରେ ଯାଇ ତାଙ୍କୁ ଦେଖି ପଛେ ଫେରିଆସିବୁଁ ।

ସେ ସବୁ ଶୁଣିଲେ । ପୁଣି କଅଣ ଭାବିଲେ । କହିଲେ, ସେନବାବୁ ତ ଡାକ୍ତରଖାନାରେ ନାହାନ୍ତି ।

ନାହାନ୍ତି ? କହି, ବୋଉ ଚିତ୍କାର କରି ଉଠିଲା । ପଗ୍ଭରିଲା, ସେ ତେବେ କାହାନ୍ତି ? ଯେଉଁଠି ଅଛନ୍ତି ମୋତେ ସେଠିକି ଟିକେ ନେଇ ଚାଲନ୍ତୁ । ତାଙ୍କୁ ଆଗ ନ ଦେଖିଲେ—।

ଆହା—ହା—, ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି ? କହି, ଶରତ୍‌ବାବୁ ଚାଲି ଚାଲି ଆମର ଗାଡ଼ି ପାଖକୁ ଆସିଲେ । ଧୀରେ,

ଶାନ୍ତଭାବରେ କହିଲେ, ବ୍ୟସ୍ତ ହେବେ ନାହିଁ । ତାଙ୍କର ଦେହ ଭଲ ହୋଇଗଲାଣି । ସେ ହ ହନ ହେଲା ଡାକ୍ତରଖାନାରୁ ଚାଲି-ଆସିଲେଣି । ସାମାନ୍ୟ ଟିକେ ତ ଜର ।

ବୋଉ ପଚାରିଲା, ସେ ଅଛନ୍ତି କେଉଁଠି ?

ଶରତ୍‌ବାବୁ କହିଲେ, ଏଇଠି ଥିଲେ । ଛୋଟ ବସା, ଅସୁବିଧା ହେଲା । ରୋଗୀର ଯତ୍ନର ଅଭାବ ହେଲେ ଜର ପୁଣି ନେଉଟିବ । ଏହି ଡରରେ ଗାଡ଼ି ସଜାଡ଼ି କରି ଆଜି ସଞ୍ଜ ଆଗରୁ ତାଙ୍କୁ ଘରକୁ ବିଦା କରିଦେଲି । ସାଙ୍ଗରେ ଲୋକ ଅଛି । କିଛି ଅସୁବିଧା ହେବନାହିଁ । ମୁଁ କହୁଛି କଅଣ କି, ରାତି ଆସି ଏତେ ହେଲାଣି । ଆଜି ଆପଣମାନେ ଏଇଠି ରହିଯାନ୍ତୁ । କାଲି ସକାଳୁ ଉଠି ଚାଲିଯିବେ । ସେ ବୋଧହୁଏ ଘରେ ପହଞ୍ଚି ସାରିବେଣି । ଘରେ ଲୋକ ଥିବେ ତ ?

ବୋଉ କହିଲା, ଘରେ ଲୋକ ଥିଲେ କଅଣ ହେଲା, ତାଙ୍କର ଅସୁବିଧା ହେବ । ଆମେ ରାତିଏ ରାତିଏ ଫେରିଯିବୁଁ ।

ଶରତ୍‌ବାବୁ ଅନେକ ବୁଝାଇଲେ । ରାତିଟା ରହିଯିବାକୁ ପ୍ରବର୍ତ୍ତାଇଲେ । ବୋଉ ଏକଜିଦ୍ ଧରି ବସିଲା । ତାଙ୍କ କଥା ମାନିଲା ନାହିଁ । ମନେ ମନେ ବୋଉ ଉପରେ ମୁଁ ଚିଡୁଥାଏଁ । ରାତିଟା ରହିଗଲେ କଅଣ କ୍ଷତି ହେବ ? ଘରେ ବାଧା ଅଛି । ବାପା ପହଞ୍ଚି ସାରିବେଣି । ଶୋଇବେଣି । ଅଧରାତିରେ କଷ୍ଟ ପାଇ ଯିବା ଦରକାର କଅଣ ? ବଳଦଗୁଡ଼ା ହାଲିଆ ହୋଇ-ପଡ଼ିଛନ୍ତି ।

ଶରତ୍‌ବାବୁ ଦୁଃଖିତ ହୋଇ କହିଲେ, ଯିବେ ଯଦି ଫେରି-ଯାଆନ୍ତୁ, ରାତି ବଢ଼ିଲେଇ ପଡ଼ୁଛି । ବେଶି ଡେରି କରିବା ଭଲ ନୁହେଁ । ମୁଁ କହୁଛି, ଟିକିଏ ଜଳଖିଆ କରିଯାଆନ୍ତୁ ।

ବୋଉ ଘଜ ହେଲ ନାହିଁ । ଜଳଖିଆ କରିବାକୁ ମୋତେ ଉପଦେଶ ଦେଲ ।

ଶରତ୍‌ବାବୁଙ୍କର ଆଧର କଥା ଶୁଣି ମୁଁ ଏକା ଗାଡ଼ିରୁ ଓହ୍ଲାଇଲି । ତାଙ୍କୁ ପ୍ରଣାମ କଲି । ସେ ମୋତେ ଆଶୀର୍ବାଦ କଲେ । କହିଲେ, ତୁ ମୋର ଝିଅ । କେତେଦିନୁ ତୋତେ ଦେଖିବି ବୋଲି ମୋର ଆଶା ଥିଲା । ଆ, ମା ।

ତାଙ୍କ ଘର ଭିତରକୁ ଗଲି । ଶରତ୍ ବାବୁ ତାଙ୍କ ସ୍ତ୍ରୀଙ୍କ କାନରେ ଗୁନ ଗୁନ କରି କଅଣ କହିଲେ । ମୋତେ ଶୁଣାଇ କହିଲେ, ଗୀତାକୁ ଦେଖିବ ବୋଲି କେତେଦିନୁଁ କହୁଥିଲ । ଦେଖ । ଭୋଳାନାଥ ମୋର ବନ୍ଧୁ । ତାର ଝିଅ ଯିଏ, ମୋର ଝିଅ ସିଏ ।

ମୋର ମୁଣ୍ଡରେ ହାତ ବୁଲାଇଲେ ।

ଶରତ୍‌ବାବୁଙ୍କ ସ୍ତ୍ରୀ କେଡ଼େ ଭଲ ଲୋକ । ଯେଉଁ ଦଶ ପନ୍ଦର ମିନିଟ ତାଙ୍କ ଘରେ ରହିଲି ସେତିକରେ ସେ ମୋତେ କାଖେଇ କୁଣ୍ଢେଇ ଆପଣାର କରିନେଲେ । ଆମ ଘରକଥା, ଆମର କେତେ ସମ୍ପତ୍ତି, ଆଉ ସବୁ କିଏ କିଏ ଆତ୍ମୀୟ ଅଛନ୍ତି, ଇତ୍ୟାଦି କଥା ମୋ ଠାରୁ ବୁଝିନେଲେ । ଏଟା ଖା, ସେଟା ଖା, କହି କହି ପେଟେ ଖୁଆଇଲେ ।

ବଳଦଗୁଡ଼ିକୁ ଖୁଆଇପିଆଇ ଧାନା ଭଜନା ଓ ଅମୁଖ଼ଇ ଜଳଖିଆ କଲେ । ଧାନା ଯେତେବେଳେ ଡେରି ହେଉଛି ବୋଲି ମୋତେ ଡ଼ାକିଲା, ଶରତ୍‌ବାବୁଙ୍କ ସ୍ତ୍ରୀ ମୋର ଓଠରେ ହାତ ଦେଇ ଲୁହଭରା ଆଖିରେ କହିଲେ, ମା ମୋର, ତିନିଟା ଛଡ଼ିବ ବାଳୁଙ୍ଗା ପୁଅ ଜନ୍ମ କରି ଧନଗତ ଦାହଗଞ୍ଜ ହୋଇ ମରିବା ଅପେକ୍ଷା, ତୋ

ପର ରତ୍ନଟିଏ ଯଦି ମୁଁ କୋଳରେ ପାଇଥାନ୍ତି ! ହଉ, ଠାକୁରେ ତତେ ସୁଖୀ କରନ୍ତୁ । ହେଳବାବୁଙ୍କ ଝିଅ ତୁ, ମୋର ଝିଅ ପର । ମନେ କରୁଥିବୁ ।

ବିଦାୟ ନେବାକୁ ତାଙ୍କୁ ପ୍ରଣାମ କଲି । ସେ ମୋତେ ତଳୁ ଉଠାଇଲେ । ଗୁଣ୍ଡକୁ ଆଉଜାଇ ଧରି କହିଲେ, ଗୀତା, ତୁ ମୋର ଝିଅ । ମୋତେ କାଳେ ଭୁଲିଯିବୁ, ମୁଁ ତ ଗରିବ, ତୋତେ କଣ ଦେଇପାରିବି ?

କାନରୁ କାଢ଼ି ସୁନାର ଦୁଲ୍ ହଓଟି ମୋତେ ପିନ୍ଧାଇ-ଦେଲେ । କାହିଁକି ଯେ ସେ କାନ୍ଦି କାନ୍ଦି ହେଲେ ମୋର ବୁଝିବାର ଉପାୟ ନ ଥିଲା । ମୁଁ ତାଙ୍କର ଦୟା, ଆଦର ଯତ୍ନରେ କିଣିହୋଇ ସାରିଥିଲି । କୃତଜ୍ଞତାରେ ମନ ନଇଁ ପଡ଼ିଲା ।

ପଦାକୁ ଆସିଲି । ସେ ମଧ୍ୟ ମୋ ସାଙ୍ଗରେ ଆସିଲେ । ଶେଷଥର ବିଦାୟ ନେଇ ମୁଁ ଗାଡ଼ିରେ ବସିଲି । ଶରତ୍‌ବାବୁ ଥରେ ଘର ଭିତରକୁ ଯାଇ ଫେରିଆସିଲେ ଗାଡ଼ି ପାଖକୁ । ଅମୁଭାଇଙ୍କ ହାତକୁ ପାଞ୍ଚ ଟଙ୍କାର ନୋଟ ଖଣ୍ଡେ ବଢ଼ାଇଦେଇ କହିଲେ, ଗୀତାବୋଉଙ୍କୁ ଦେବ । ହେଳବାବୁ ଗଲାବେଳକୁ ହାତରେ କିଛି ନେଇଯାଇ ନାହାନ୍ତି ।

ଗାଡ଼ି ଫେରନ୍ତି ଚାଲିଲା ।

## —ପଚିଶ—

ନଈକୂଳରୁ ବିଦାୟ ନେଇ ଅମୁଭାଇ କଟକରେ ରହିଲେ । ବୋଉ ପଚାରିଲାରୁ କହିଲେ, ତାଙ୍କର କିଏ ଜଣାଶୁଣା ଲୋକ ତେଲିଙ୍ଗା ବଜାରରେ ଅଛନ୍ତି । ତାଙ୍କର ବସାରେ ରହି ଚାକିରି

ଚେଷ୍ଟା କରିବେ । କଟକରେ ନ ମିଳିଲେ କଲକତା କ କାଳିମାଟି ଯିବେ ।

ନଈ ପାରହୋଇ ଗାଡ଼ି ରାସ୍ତାଏ ରାସ୍ତାଏ ଚାଲିଲା ।

ପଚାରିଲି, ବୋଉ, ବାପା ଏଇ ରାସ୍ତାରେ ତ ଯାଇଥିବେ । ଆମେ ଆସିଲାବେଳକୁ ତ ଦେଖା ହୋଇଥାନ୍ତା !

ବୋଉ କହିଲା, କେତେ ବଳଦ ଗାଡ଼ି ଯାଉଥିଲା, କେଉଁଥିରେ ସେ ଗଲେ ଆମେ ଜାଣି ପାରିଲୁ ନାହିଁ । କେଉଁ ବାଟରେ ତାଙ୍କ ଗାଡ଼ି ଗଲା, ସେ କଥା ବୁଝିଲେ ଜଣା ପଡ଼ିବ । ଘରେ ରାଧା ଅଛି । ତାଙ୍କର ଅସୁବିଧା ହେବ ନାହିଁ ଯେ, ଆମ ପାଇଁ ସେ ଦକ ଦକ ହେଉଥିବେ । ଆମ ଗାଡ଼ି ସହଳ ପହଞ୍ଚିଲେ ଭଲ ହୁଅନ୍ତା ।

ମୋତେ ନିଦ ମାଡ଼ୁଥିଲା । ମୁଁ ଲମ୍ବ ହୋଇ ଶୋଇ ପଡ଼ିଲି । ପୁଷମାସର ଶୀତ । ମଞ୍ଜି ଥରି ଯାଉଥାଏ । ବଳଦଗୁଡ଼ା ଟରି ଥରି ଚାଲୁଥାନ୍ତି । ଭଜନା ନିଆଁବିରିଆ ଆଉ ନଲଟଣ ଧରି ଚାଲୁଥାଏ ଆଗେ ଆଗେ । ଘନା ମାଠ ଘୋଡ଼ି ହୋଇ ଗାଡ଼ି ଆଗରେ ବସି ବେଳେ ବେଳେ ପାମ୍ଫଣରେ ବଳଦ ପିଠିରେ ପାହାର ମାରୁଥାଏ ।

ଭଜନା କହିଲା, ରାତି ଅଧରେ ଭଲ ବାଟରେ ଯିବାନାହିଁ ଦାଦି, ଅପନ୍ତରା ମଶାଣି ପଡ଼ିବ । ଏକୁଟିଆ ଗାଡ଼ି, ଭୂତପ୍ରେତ ହାବୁଡ଼ିଯିବେ ।

ଘନା କହିଲା ମୁଁ ସେଇଆ ଭାବୁଥିଲି । ଯୋହଳ ଗାଁ ମୁଣ୍ଡ ଝଙ୍କା ବରଗଛ ତଳେ କେତେ ଲୋକ ଡ଼ରନ୍ତି । ସଇତାନ୍ ଅଛି । ଜଣିକିଆ ଗଲେ ସେଇଠି ଶେଷ । ଚାରି ପାଞ୍ଚ ଜଣ ସାଙ୍ଗ ହୋଇ ଗଲେ ବି, ସଇତାନ ବାଟ ଛକି ଡ଼ରାଏ । ବାପ୍‌ରେ ! କଅଁଳା ବାଳୁଙ୍ଗା ପରି ବଡ଼ ।

ଭଳ କହିଲା, ସେଠି ଯାହା ହେଲେ ରକ୍ଷା । ହାତରେ ନଅାଁ ବନ୍ଧଆ ଥିଲେ କି ବନ୍ଧୁଆରେ ଗୁଆକାତ ଥିଲେ ସଇତାନ ପାଖରେ ପଶେ ନାହିଁ । ବଶିପୁର ପାଖ ସେ ସେଉଁ ମଶାଣି ଦଣ୍ଡା, ବୁଢ଼ବୁଢ଼-କଅା ବଣ, ଯେଠି ସାତ ଭଉଣୀ ପିଚୁଶୁଣୀ ଥାନ୍ତି । ସେମାନେ ନଅାଁ ମାନନ୍ତି ନାହିଁ କି ଲୁହା ମାନନ୍ତି ନାହିଁ । ଖଣ୍ଡିଆ ପୋଖରୀକୂଳ ତାଳଗଛ ମୂଳରେ ବସି ସାତଟା ଯାକ ଧର ମଡ଼ କାଟି ଖାଆନ୍ତି । ବାପ୍‌ରେ, ଯୋଉ କଳକଳା ରଡ଼ି, କାନରେ ପଡ଼ିଲେ ପିଳେଇ ପାଣି ହେବ । ନାଇଁ ଦାଦା, ରସ୍ତାରେ ଯିବା, ଡେ଼ର ହେଲେ ହେବ ପଛେ ।

ଗାଡ଼ି ଆସି ଜଗନ୍ନାଥ ରସ୍ତାରେ ଚାଲିଲା ।

ବୋଉ ମୋ ପାଖରେ ଶୋଇଲା । ଉପରେ ତା କୋଳକୁ ଘୁଞ୍ଚି ଶୋଇଲି ।

ପାହାନ୍ତା ବେଳକୁ ଗାଁରେ ପହଞ୍ଚିଲୁ । ଆଗ ମୋର ନିଦ ଭାଙ୍ଗିଲା । ବୋଉକୁ ଉଠାଇଲି । ସେ ଉଠି ବସିଲା ।

ଘର ଆଗରେ ପହଞ୍ଚି ଦେଖିଲି, ରାଧା ବାରଣ୍ଡାରେ ବସି ନଅାଁ ପୁହୁଁଛି । ଗାଡ଼ି ଦେଖି ସେ ଦାଣ୍ଡକୁ ଗଡ଼ିଲା । ବଳଦ ନ ଖୋଲୁଣୁ ମୁଁ ତଳକୁ ଡେ଼ଇଁ ପଚାରିଲି, ବାପା କାହାନ୍ତି ?

ସେ ବଲ ବଲ କରି ମୋ ମୁହଁକୁ ଚାହିଁଲା । ତା ଆଖିରୁ ମୁଁ କଅଣ ବୁଝିଲି ମୋର ମନେ ନାହିଁ, ଆହୁରି ଅସ୍ଥିର ହୋଇ ପଚାରିଲି, କହ, ବାପା କାହାନ୍ତି ?

ସେ ଉତ୍ତର ଦେଇ ପାରିଲା ନାହିଁ । ଆଖି ଦୁଇଟି ଲୁହରେ ଭରିଗଲା । ବୋଉ ଗାଡ଼ିରୁ ଓହ୍ଲାଇ ଆମ ପାଖକୁ ଛୁଟି ଆସିଲା । ତାକୁ ପାଖରେ ଦେଖି ରାଧା ମୋର ହାତ ଛାଡ଼ି ତାକୁ କୁଣ୍ଢାଇ

ଧରିଲି । ସତକଥାକୁ ଲୁଚାଇ ରଖିପାରିଲି ନାହିଁ । ବାହୁନି ଉଠିଲି···।

ସେ ଦିନର ସେହି କରୁଣ ଦୃଶ୍ୟଟି ଯେତେବେ ମୋର ମନେ ପଡ଼େ ଛାତି ମୋର ଥର ଥର ହୋଇ କମ୍ପି ଉଠେ । ପିଣ୍ଡରୁ ପ୍ରାଣ ଛାଡ଼ିଗଲା ପରି ଲାଗେ । ସେ ଅନୁଭୂତି ବର୍ଣ୍ଣିବାକୁ ମୁଁ ଭାଷା ଖୋଜି ପାଉନାହିଁ । ଆଜି ବି ମନେ ପଡ଼ିଲେ ମୋର ଛାତି କରତି ହେଉଛି । ମୁଣ୍ଡ ଭିତରେ ମଶାଣି ନିଆଁ ଜଳି ଉଠୁଛି ।

କେତେ ଦୁଃଖ କେତେ ଯନ୍ତ୍ରଣା ଭିତର ଦେଇ ମୋର ଜୀବନ ଆଗେଇ ଆସିଛି । ସହି ସହି ଛାତି ପଥର ହେଲାଣି । ଏପରି କେତୋଟି ଘଟଣା ମୋ ଜୀବନରେ ଘଟିଛି ଯାହାର ସ୍ମୃତି ଆଜି ବି ମୋର ପଥର ଛାତିକୁ ଦୋହଲାଇ ଦେଉଛି । ସେ ଦିନର ସେହି ଘଟଣା ଛାତିରେ ଗମ୍ଭୀର ଗାର ଟାଣି ଦେଇଛି । ଚିତାନିଆଁରେ ଦେହ ପୋଡ଼ି ପାଉଁଶ ନ ହେବା ଯାଏ ସେ ଗାର ଲିଭିବ ନାହିଁ । ଲିଭିବ ନାହିଁ ।

ଶରତ୍‌ବାବୁ ଆମକୁ ଭୁଲାଇ ଫେରାଇଦେଲେ । ଆମେ କଟକରେ ପହଞ୍ଚିବା ଆଗରୁ ସେ ଜଣେ ଲୋକ ହାତରେ ଯେଉଁ ଚିଠି ଲେଖି ପଠାଇଥିଲେ ସେଥିରେ ମୋଟେ ଧାଡ଼ିଟିଏ ଲେଖାଥିଲା, ଭୋଳାବାବୁ ଆଜି ଦିନ ଆଠଟା ବେଳେ ସେ ପୁରକୁ ଚାଲିଗଲେ ।

—ଛବିଶ—

ଦୁଃଖର ପାହାଡ଼ ମୁଣ୍ଡରେ ବୋହି କାଟିଲୁଁ ।

ଟୋଉର ଆଖିରୁ ଲୁହ ବନ୍ଦ ହେଲାନାହିଁ । ଦିନ ଦିନ ହୋଇ ମାସଟିଏ କଟିଗଲା । ମାସ ନୁହେଁ ସେ ଗୋଟାଏ ଯୁଗ । ଗାଁ

ଲୋକେ କଏ କେତେବେଳେ ଆସି ସହାନୁଭୂତି ଦେଖାଇ ଗୃହକଥା ବୁଝାଇଗଲେ । ବୋଉ ସବୁ ଶୁଣିଲା । ତା ଦୁଃଖ କମିବା ପରିବର୍ତ୍ତେ ବଢ଼ିଲା ।

ମୋ କଥା ବା କଅଣ କହିବି ? ବାପା ମଲା ଦିନରୁ ସବୁ ଆଶା ଉତ୍ସାହ ମୋର ପୋଡ଼ି ଜଳି ପାଉଁଶ ହୋଇଥିଲା । ମୁଁ ଜାଣିଥିଲି ଯେ ମୋର ଭବିଷ୍ୟତଟା ନିବିଡ଼ ଅନ୍ଧାର ମଧ୍ୟରେ ଛପି ଯାଇଛି । ସଂସାରରେ ଯିଏ ମୋର ସୁଖ ଆନନ୍ଦ ପାଇଁ ମନପ୍ରାଣ ଦେଇ ଚେଷ୍ଟା କରୁଥିଲେ, ଭଗବାନ ତାଙ୍କୁ ନେଇଗଲେ । ମୋ ପାଇଁ ଭଲମନ୍ଦ ଖୋଜିବାକୁ ଆଉ କେହି ନାହିଁ । ଯେଉଁମାନେ ଉପରେ ପଡ଼ି ବାହାରିଆ ସହାନୁଭୂତି ଦେଖାଇବାକୁ ଆସିବେ, ସେମାନେ ଯେ କେବେ ନିଃସ୍ୱାର୍ଥ ଭାବରେ କିଛି କରିବେ, ଏ ଆଶା ମୋର ନଥିଲା । ପରପାଇଁ କାହାର ମୁଣ୍ଡ ବଥାଇବ କାହିଁକି ? ସଂସାରରେ ସମସ୍ତେ ନିଜ ନିଜର ସୁଖ ଦୁଃଖ ନେଇ ବ୍ୟସ୍ତ ।

ଯେଉଁ ଜଣକ ମୋ ପାଇଁ ଭାବିବ, ମୋର ସୁଖ ଆନନ୍ଦ ଦେଖିବାକୁ ଆକୁଳ ହେବ ସେ ନିକର୍ତ୍ତବ୍ୟ ଲୋକ । କେବଳ ଭାବିବା ଛଡ଼ା ତାର ଆଉ କିଛି କରିବାର ନାହିଁ । ହାତରେ ଧନ ଥିଲେ ମଣିଷକୁ ବୁଦ୍ଧି ଦିଶେ । ସେ ଦିଗରେ ମଧ୍ୟ ଆମର ଅଭାବ ।

ଭବିଷ୍ୟତ କଥା ଭାବିବାକୁ ବେଳ ନ ଥିଲା, ଇଚ୍ଛା ମଧ୍ୟ ମରିଗଲା । କଅଣ କଲେ ବୋଉର ଦୁଃଖ କଷ୍ଟ ଦୂର କରିପାରିବି, ତା ଆଖିର ଲୁହ ବନ୍ଦ କରିପାରିବି, ସେତିକ ହେଲା ମୋର ଭାବନା ଓ ଚେଷ୍ଟା । ବାପା ବଞ୍ଚିଥିବାବେଳେ ଘରର କାମ ମୋତେ ବୋଉ କରାଇ ଦେଉ ନଥିଲା । ଉପରେ ପଡ଼ି କିଛି କଲେ ସେ ବିରକ୍ତ ହୁଏ । କିନ୍ତୁ ବାପା ମଲା ପରେ ଯେତେବେଳେ ସେ

ଦୁଇମାସ କାଳ କାନ୍ଦ କାନ୍ଦ ବିଛଣା ଲାଗି ହେଲା; ମୋତେହିଁ ଘରର ସବୁ କାମ କରିବାକୁ ପଡ଼ିଲା ।

ଧୀରେ ଧୀରେ ବୋଉର ଦୁଃଖ କମି ଆସିଲା । ବିଛଣାରୁ ଉଠି ସେ ଘର ଆଡ଼କୁ ଓ ମୋ ଆଡ଼କୁ ନଜର ଦେଲା; କିନ୍ତୁ ତାର ପୂର୍ବ ସ୍ୱାସ୍ଥ୍ୟ ଆଉ ଫେରିପାଇଲା ନାହିଁ । କାମଦାମ କରିପାରିଲା ନାହିଁ ।

ତାର ଦୁଃଖ ଦୂର କରିବାକୁ ମୋର ସାଧ ନାହିଁ । ମୁହିଁ ତ ତାର ପ୍ରଧାନ ଦୁଃଖ । ମୋତେ ଦେଖିଲେ ତାର ଆଖିରେ ଲୁହ ଆସେ । କାହିଁକି, ସେ କଥା ମୁଁ ଜାଣେ । ମୁଁ ବଡ଼ ଝିଅ, ବୟସ ବଳେଇଯାଉଛି, ପରଘରକୁ ଯାଇନାହିଁ, ଏହାହିଁ ତାର ପ୍ରଧାନ ଭାବନା, ପ୍ରଧାନ ଦୁଃଖ ।

ରାଧା ବେଳେବେଳେ ଆସେ । ହାତରୁ ଛଡ଼ାଇ ଘରପାଇଟି କରିଯାଏ । ବୋଉକୁ ବୁଝାଏ । କହେ, ତମେ ଏତେ ଅଧୀର ହେଲେ ଚଳିବ ନାହିଁ । ଠାକୁରେ ଯାହା ଭାଗ୍ୟରେ ଯାହା ଲେଖିଛନ୍ତି ମଣିଷ ତାକୁ ଅନ୍ୟଥା କରିପାରିବ ନାହିଁ । ସେ ଗଲା-ଗଲେ, ପୁଣ୍ୟବନ୍ତ ପୁରୁଷ, ଦୁଃଖରେ ସଂସାରରେ ଘାଣ୍ଟି ହୋଇ ତମ ଆମ ଭଳି କଷ୍ଟ ପାଇବାକୁ ରହନ୍ତେ କାହିଁକି ?

ବୋଉ କାନ୍ଦ କାନ୍ଦ କହେ, ସେ ଗଲାଗଲେ ସୁଖରେ, ହଁ, ମୋହର ଗୁଣ୍ଡରେ ପଥର ବୋଝ ଲଦି ଦେଇଗଲେ । ଥାଉଁ ଥାଉଁ ଯଦି ଗୀତାର ହାତକୁ ଦିହାତ କରି ଯାଇଥାନ୍ତେ, ମୁଁ ଏତେ ଭାବନ୍ତି ନାହିଁ ଲୋ ରାଧା, ଏତେ କାନ୍ଦନ୍ତି ନାହିଁ । ହସି ହସି ତାଙ୍କର ପଛେ ପଛେ ଯାଇଥାନ୍ତି । ସେ ଇଚ୍ଛା ବେଳେବେଳେ ହୁଏ, କିନ୍ତୁ

ରାଧା, ଗୀତାର ଅବସ୍ଥା କଅଣ ହେବ କହିଲୁ ? କିଏ ତାର ମୁହଁକୁ ଚାହିଁବ, ତାର ଭଲ ମନ୍ଦ ବୁଝିବ ?

ବୋଉ କାନ୍ଦେ ।

ରାଧା ସାନ୍ତ୍ୱନା ଦେଇ କହେ, ହଁ, ଗୀତା ହତଭାଗୀ । ତାର ଦାୟିତ୍ୱ ତମର ଉପରେ ପକାଇ ସେ ଖସିଯାଇଛନ୍ତି । ତମେ କାନ୍ଦିଲେ ବୋବେଇଲେ ଚଳିବ ନାହିଁ । ଗୀତାର ବାହାଘର କିପରି ଶୀଘ୍ର ହେବ ସେ କଥା ଏବେ ଭାବିବାର । ସେ ଦିଗରେ ଚେଷ୍ଟା କର । ସୁଖ ଦୁଃଖ ଭଲମନ୍ଦ ସଂସାରରେ ଲାଗିଛି । ଯେତେବେଳେ ଯାହା ଆସିବ ସହିବାକୁ ପଡ଼ିବ ।

ବୋଉ ଚୁପ ରହେ ।

ରାଧା ପୁଣି କହେ, ଆଜିକାଲି ଯୁଗରେ ବାହାଘର ହେଉଛି ଟଙ୍କାର ଖେଳ । ମଣିଷ ଖୋଜୁଛି କିଏ ? ଟଙ୍କା ତ ହାତ କମାଉଛି । ଲୋକେ କଅଣ ସେ କଥା ବୁଝନ୍ତି ? ଗୀତା ପରି ରୂପର ଗୁଣର ଝିଅ, ତା ପାଇଁ ଭାବିବାକୁ ପଡ଼ନ୍ତା ନାହିଁ । କିନ୍ତୁ ଯେତେ ଯାହା ହେଉ, ସବୁ ଗୋଟାଏ ଆଡ଼େ, ଭାଗ୍ୟ ଗୋଟାଏ ଆଡ଼େ ।

ଦୁଃଖର କଥା କହିଲେ ବେଳ ସରିବ ନାହିଁ । ହୁଏତ ଶୁଣିବାକୁ କାହାରିକୁ ଭଲ ଲାଗିବ ନାହିଁ । ତଥାପି, ଯାହା ଅଙ୍ଗେ ଲାଗିଛି, ମୁହଁ ଖୋଲି ନ କହିଲେ ମନରେ ଘାଣ୍ଟିଚକଟି ହେଉଥିବ । ଚାରିପଦ କାହା ଆଗରେ କହିଗଲେ ଦୁଃଖର ବୋଝ ଟିକିଏ ଲାଘବ ହେବ ।

ବାପାଙ୍କ ମରିବାର ଚାରିମାସ କଟିଗଲା । ଦୁଃଖର ରାତି କଟିଆସିଲା । କିନ୍ତୁ ଅଭାବ ଦିନୁ ଦିନ ତୀବ୍ର ହୋଇପଡ଼ିଲା । ବାପାଙ୍କର ଅଳ୍ପ ରୋଜଗାରରେ ଆମର କୌଣସି ମତେ

ଦୁଇବେଳା ଦୁଇମୁଠି ଖାଇବା ଚଳୁଥିଲା । ଭବିଷ୍ୟତ ପାଇଁ ସଞ୍ଚିବାର ଉପାୟ ନ ଥିଲା । ରଖିବା ଯେ ଦରକାର ଏ କଥା ଯେପରି ବାପାବୋଉଙ୍କ ମନକୁ ଆସି ନ ଥିଲା । ସେମାନେ ଭାବୁଥିଲେ, ମୋର ବାହାଘର ହୋଇଗଲେ ତେଣିକି ଆଉ ଦୁଃଖ ରହିବ ନାହିଁ । ଯାହା ରୋଜଗାର କରିବେ, ସେଥିରେ ଦୁଇଟି ପ୍ରାଣୀ ଦୁଃଖେ ସୁଖେ ଚଳି ଅଭାବ ଅସୁବିଧା ପାଇଁ ଭବିଷ୍ୟତକୁ ହାତରେ କିଛିପଇସା ରଖିପିବେ ।

ବଇବ ତାଙ୍କର ବସୁର ରଖିଲା ନାହିଁ ।

—ସତେଇଶି—

**ଘ**ରେ ଖାଇବାକୁ କିଛି ନାହିଁ । ରାତିରୁ ଉପାସ । ଖରାଦିନ । ଗଛପତ୍ର ଜୀବଜନ୍ତୁ ଝାଉଁଳି ପଡ଼ୁଛନ୍ତି । ଆମର ଚଳେ କିପରି । ଏତେ ବଡ଼ ଗାଁଟାରେ ଦୁଇଟା ପ୍ରାଣୀଙ୍କୁ ମୁଠାଏ ଖାଇବାର ଅଭାବ ହୁଅନ୍ତା ନାହିଁ; କିନ୍ତୁ ବିନା ସ୍ୱାର୍ଥରେ କିଏ କାହାକୁ ପଚାରିବ ନାହିଁ । ଯାହାର ସୁଝିବାର ସମ୍ବଳ ନାହିଁ ତାକୁ କେହି ଉଧାରି ଦେବ ନାହିଁ । କେଉଁ ସାହସରେ ଆମେ ମାଗିବୁ ? କିଛିକ ଗଲାଦିନ ରାଧାଠାରୁ ଯେଉଁ ଟଙ୍କା ଧାର ଆଣିଥିଲୁ ସେତକ ଆଜଯାଏ ସୁଝା ସରିନାହିଁ । ସେ ଅବଶ୍ୟ କେବେ ମାଗେ ନାହିଁ । ତଥାପି ମାଡ଼ି ମାଡ଼ି ପଡ଼େ । ସେ ବି ଆମରି ପରି ଗରିବ ।

ଦାମଭାଇ ବେଳେବେଳେ ଆସନ୍ତି । ବୋଉ ସଙ୍ଗେ ପଦେ ଅଧେ କଥାଭାଷା ହୋଇ ବାହାରୁ ବାହାରୁ ଚାଲିଯାଆନ୍ତି । ମୋ ସଙ୍ଗେ ଦେଖା କରିବାକୁ ଆଉ କେବେ ଆଗ୍ରହ ଦେଖାନ୍ତି ନାହିଁ । ଭାବନ୍ତି ବୋଧହୁଏ, ବୋଉ ତାଙ୍କୁ ସାହାଯ୍ୟ ମାଗିବ । କିନ୍ତୁ ବୋଉ

କେବେ ତାଙ୍କୁ ଆମର ଅଭାବ ଅସୁବିଧା କଥା କହେ ନାହିଁ । ଅନୁଭବ—ଶୁଣିଲି, ସେ କଟକରେ କାମ କରୁଛନ୍ତି । ସେ କାମରେ ଛୁଟି ନାହିଁ । ବହୁଦିନ ହେଲା ତାଙ୍କ ଏଙ୍ଗେ ଦେଖା ହୋଇନାହିଁ । ସେ ତ ପାତ ପର । ତାଙ୍କଠାରୁ ସାହାଯ୍ୟ ଆଶା କରିବା ଆମ ପକ୍ଷରେ ଅସମ୍ଭବ ।

ବୋଉ କହିଲା, ଗୀତା, ଘରେ ବସିଲେ ଚଳିବ ନାହିଁ । ମୁଁ ଠିକେ ରାଧାଘରୁ ଆସେଁ । କେତେଦିନ ହେଲା ତାର ଦେଖା ନାହିଁ ।

ଖରାଟାରେ ଏକୁଟିଆ ଗାଁ ଦାଣ୍ଡରେ ଯିବୁ ?

(ସବୁଦିନେ ସଂସାରରେ ମାନ ରଖି ଚଳିବା ଅସମ୍ଭବ ଝିଅ, ଯେତେବେଳେ ଠାକୁରେ ଯାହାକୁ ଯେପରି ରଖିଛନ୍ତି ସେ ସେପରି ଚଳିବ ।)

କିଏ କଅଣ କହିବ ।

ହଁ ଲୋକେ କହିବେ । କୁହନ୍ତୁ । ସେଥିରେ ଆମର ଯାଏ ଆସେ ନାହିଁ ।

ସେ ରାଧାଘରକୁ ଗଲା । ମୁଁ ଘରେ ଏକୁଟିଆ ବସିରହିଲି । ଆକାଶ ପାତାଳ ଭାବୁଥାଏଁ । ବେଳ କେମିତି କଟିବ, କିଏ ଆମକୁ ସାହାଯ୍ୟ ହେବ ? ମନକୁ ଗୋଟିଏ କଥା ଆସିଲା । ଅଚ୍ଛା, ଶରତ୍‌ବାବୁ ବାପାଙ୍କର ବନ୍ଧୁ ଥିଲେ । ତାଙ୍କର ସ୍ତ୍ରୀ ଭଲ ଲୋକ । ତାଙ୍କ ପାଖକୁ ଲେଖିଲେ ସେ କଅଣ କିଛି ସାହାଯ୍ୟ ଦେଇ-ପାରିବେ ନାହିଁ ।

ପୁଣି ଭାବିଲି, ସେ ବା ଗରିବ । ତିନି ତିନଟି ପୁଅ ନେଇ ଦିନରାତି ମନସ୍ତାପ କରି କଟାଉଛନ୍ତି । ସେ କାହୁଁ ପାଇବେ ?

ଆଉ ଗୋଟିଏ କଥା ମୋ ମନକୁ ଆସିଲା । ସାହାଯ୍ୟ ନ ମାଗି ଆମର ଅବସ୍ଥା ତାଙ୍କୁ ଜଣାଇଦେଲେ କ୍ଷତି ହେବ ନାହିଁ ।

ମୋର ବାହାଘରର କଥା ନିଶ୍ଚୟ ସେ ବାପାଙ୍କ ମୁହଁରୁ ଶୁଣିଥିବେ । ବାପା ଅବଶ୍ୟ ତାଙ୍କୁ ରଘୁବାବୁଙ୍କ ଘରକଥା କହିଥିବେ । ଯଦି ଶରତ୍‌ବାବୁଙ୍କ ମନେ ପଡ଼େ କେଜାଣି ସେ ଚେଷ୍ଟା କରି ପାରନ୍ତି ।

ମନେ ମନେ ବହୁତ ତର୍କ କରି ଶେଷକୁ ଠିକ୍ କଲି, ଖଣ୍ଡେ ଚିଠି ଶରତ୍‌ବାବୁଙ୍କ ସ୍ତ୍ରୀଙ୍କ ପାଖକୁ ଲେଖିବି । ଦିଣ୍ଡାକର ଦେଖାରେ ତାଙ୍କ କୋମଳ ମନର ପରିଚୟ ପାଇଛି । ସେ କେବେ ଅନ୍ୟଥା ଭାବିବେ ନାହିଁ । କାଗଜ କଲମ ଆଣି ଭାବିଚିନ୍ତି ଚିଠି ଲେଖିଲି ।

ଚିଠିରେ ତାଙ୍କୁ ବୋଉ ବୋଲି ସମ୍ବୋଧନ କରି ସତର୍କତାର ସହିତ ଆମର ଦୁଃଖ କଥା ଲେଖିଲି । ବୋଉ କିପରି ସବୁବେଳେ କାନ୍ଦି କାନ୍ଦି ଅସ୍ଥିର ହେଉଛି, ସେ କଥା ମଧ୍ୟ ଉଲ୍ଲେଖ କଲି । କଦଳୀଅର କ୍ଷୀରରେ ଲଫାପା ବନ୍ଦ କରି ତା ଉପରେ ଠିକଣା ଲେଖିଲି । ସବୁ ତ ହେଲା, ଚିଠି ଯିବ କିପରି ? ଟିକେଟ ଲଗାଇବାକୁ ପଇସା ନାହିଁ । ଡାକଘରକୁ ନେଇ ବେରିଙ୍ଗ ପକାଇବାକୁ ବା ଲୋକ କାହିଁ ?

କୂଅମୂଳେ ଠିଆହୋଇ ଭାବୁଛି, ବନ୍ଧ ଉପରେ ଦୁଧ ଭାର ନେଇ ଆର ଗାଁରୁ ଗଉଡ଼ ଯାଉଥିବାର ଦେଖିଲି । ସେମାନେ ନିତି କଟକ ଯାଆନ୍ତି, ସଞ୍ଜ ହି ଘଡ଼ିକ ପୁଣି ଫେରିଆସନ୍ତି । କାହାର ନାଁ ଜାଣେ ନାହିଁ । ସମସ୍ତଙ୍କୁ ଚିହ୍ନେ । ପିଲାଦିନୁ ଦେଖିଆସିଛି । ସେମାନେ ବି ପିଲାଦିନୁ ମତେ ଏଇଠି ଦେଖିଆସୁଛନ୍ତି । ଲଜ୍ଜା କଅଣ ?

ଗୁରିଆଡ଼କୁ ଗୁହିଁ ବନ୍ଧ କଡ଼କୁ ଗଲି । ସେମାନେ ଯେପରି ପାଖକୁ ଆସିଲେ ଓଢ଼ଣା ଦେଇ ଚିଠିଟି ଜଣକ ଆଡ଼କୁ ବଢ଼ାଇ-ଦେଲି । ପଛରେ ଯାଉଥିବା ଲୋକଟି ଚିଠିଖଣ୍ଡି ମୋ ହାତରୁ ନେଇ ପଚାରିଲା, ଟିକେଟ ଲାଗିନାହିଁ ମା !

ମୁଁ କହିଲି, ବେଟିଙ୍ଗ୍ ପକାଇଦେବ ।

ଗଉଡ଼ଟି ଆଶ୍ଚର୍ଯ୍ୟ ହୋଇ ମୋ ଆଡ଼କୁ ମୁହୂର୍ତ୍ତେ ଚାହିଁଲା । ମୋର ରୂପ ଓ ଭେକ ଦେଖି ବୋଧହୁଏ ସେ ଆମର ଅବସ୍ଥା ଅନୁମାନ କଲା । ମୁଁ ତ ତାକୁ ପିଲାଦିନୁ ଦେଖିଆସୁଛି । ନାମ ସିନା ଜାଣେ ନାହିଁ କି କେବେ କଥାଭାଷା ହୋଇନାହିଁ, ମୁଁ କାହାର ଝିଅ ସେ ହୁଏତ ଜାଣିଥିବ । ନୋହିଲେ, ଦୁଃଖରେ ମୁହଁ ଶୁଖାଇ କାହିଁକି ସେ କହିଲା, ହଉ ମା, ଚିଠି ପୋଷ୍ଟ ଅଫିସରେ ପକାଇଦେବି ।

ସେ ଆଗେଇଗଲା ।

—ଅଠେଇଶି—

ମୁଁ ବାରିଆଡ଼କୁ ଫେରିଲି । ଦେଖିଲି, ଦାମଭାଇ ଖଞ୍ଜା ଭିତରୁ ଆସୁଛନ୍ତି । ଆଶ୍ଚର୍ଯ୍ୟ ହୋଇ ଚାହିଁଲି ତାଙ୍କ ଆଡ଼କୁ ।

ପଚାରିଲେ, ଖୁଡ଼ୀ କାହାନ୍ତି ଗୀତା, ଦାଣ୍ଡ କବାଟ ବାରି କବାଟ ସବୁ ମୁକୁଳା । ଭାବିଲି, କୁଆଡ଼େ ଏମାନେ ଗଲେ ? ଭୁ ଆସି ବାରିଆଡ଼େ ।

ମନରେ ଭୟ ହେଲା । ଗଉଡ଼କୁ ଚିଠି ଦେବା କଅଣ ଦାମଭାଇ ଦେଖିଲେ ? କଅଣ ମନେ କରିଥିବେ ? ସଙ୍କୁଚିତ ହୋଇ କହିଲି, ବୋଉ ସାଧାଘରକୁ ଯାଇଛି ।

କେତେବେଳୁ ?

ଅଧଘଣ୍ଟାଏ ହେବ ।

ବାରରେ ଠାଇଁଠାଇଁଆ ଖରା । ସହି ନ ପାରି ଖଞ୍ଜା ଭିତରକୁ ଆସିଲି । ଦାମଭାଇ ମୋ ପଛେ ପଛେ ଆସିଲେ ।

ପିଣ୍ଡାରେ ଖଣ୍ଡେ ସପ ପାରିଦେଲି । ସେ ବସିଲେ । ପାନ ନାହିଁ । ତାଙ୍କର ଚର୍ଚ୍ଚା କରିବ କିପରି ? ଗୁଆ ଦି ଖଣ୍ଡି ଲବଙ୍ଗ ଗୋଟିଏ କାଚ ଥାଳିଆରେ ତାଙ୍କ ପାଖରେ ଥୋଇଦେଇ ଦୁଆରବନ୍ଧକୁ ଆଉଜି ଠିଆହେଲି ।

ସେ କେତେବେଳ ଯାଏ ତୁନି ହୋଇ ବସିଲେ । ମୁହଁ ଗମ୍ଭୀର ଦେଖା ଯାଉଥାଏ । କଅଣ ଭାବୁଥାନ୍ତି । ଭରସି କରି ପଚାରିଲି, ଭାଉଜବୋଉ କେମିତି ଅଛନ୍ତି ?

ମୋ ମୁହଁକୁ ଚାହିଁଲେ । ସାମାନ୍ୟ ହସି କହିଲେ, ଭଲ ଅଛନ୍ତି । ଟିକିଏ ରହି ଓଲଟି ପଚାରିଲେ, ଖୁଡ଼ୀ କେତେବେଳେ ଆସିବେ ?

ଆସୁଥିବେ, ଆପଣ ବସନ୍ତୁ ଟିକିଏ ।

ସେ ପୁଣି ମୋ ମୁହଁକୁ ଚାହିଁ ହସିଲେ । ତୁନି ତୁନି କହିଲେ, ଆପଣ ?

ତାଙ୍କ ହସର ଅର୍ଥ ବୁଝିଲି । ତାଙ୍କୁ ମୁଁ ଆଗେ ତମେ ବୋଲି କହୁଥିଲି । ହଠାତ୍ ଆଜି ମୋ ପାଟିରୁ ଆପଣ ପଦଟି ବାହାରିଗଲା । ଆଗେ ସେ ବରାବର ଆସୁଥିଲେ । ଭଲରେ ହେଉ ମନ୍ଦରେ ହେଉ ମୋ ସଙ୍ଗେ କଜିଆ କରୁଥିଲେ । ଏବେ ତ ଆଉ ଆସନ୍ତି ନାହିଁ । ଆସିଲେ ବି ମୋ ପାଖରୁ ଦୂରେଇ ରହନ୍ତି । କଥାଭାଷା କରନ୍ତି ନାହିଁ । ଯେତେ ଆପଣାର ହେଲେ ମଧ୍ୟ ମଣିଷ ଦୂରେଇ ରହିଲେ ଡର ମାଡ଼େ । ସେ ପର ହୋଇଯାଏ ।

ମୁଁ ଲାଜରେ ହୋଇ ଘରଭିତରକୁ ପଶିଆସିଲି ।

ସେ ପଚାରିଲେ, ରାଧାଘରକୁ ବଦନଟାରେ ଯାଇଛନ୍ତି କାହିଁକି ?

କଅଣ ଉତ୍ତର ଦେବ ଭାବି ପାରିଲି ନାହିଁ । ଯେ ସୁଖରେ ଥାଏ, ତା ଆଖିକି ଅନ୍ୟର ଦୁଃଖ ଦେଖାଯାଏ ନାହିଁ । ଭାବିଚନ୍ତି କହିଲି, ମୁଁ ଜାଣେ ନାହିଁ ।

ତୁ ଜାଣୁ ନାହିଁ ?

ମିଛରେ କହିଲି, ନା—ଆଁ—।

ପଚାରିଲେ, ଗଉଡ଼ ହାତରେ କି ଚିଠି ଦେଉଥିଲୁ ? କଣ୍ଟକ ?

ଯାହା ଡରୁଥିଲି ସେଇଆ ହେଲା । ଦାମଭାଇ ଦେଖିଛନ୍ତି । ଲୁଚାଇଲେ ଆଉ ଚଳିବ ନାହିଁ । କହିଲି, ହଁ, କଣ୍ଟକ ।

ସଙ୍ଗେ ସଙ୍ଗେ ସେ ପଚାରିଲେ, ଆଜକାଲି ଅମର କେଉଁଠି ଅଛି କି ?

ଅମର ?

ସେ ଭାବିଛନ୍ତି, ମୁଁ ଅମର ପାଖକୁ ଚିଠି ଲେଖିଦେଇଛି । ମୁଣ୍ଡ ଘୁରିଗଲା । ବୃଥାରେ ଚିଠିଖଣ୍ଡି ଲେଖିଲି । ହଟହଟା ହେବାକୁ ପଡ଼ିଲା । କାନ୍ଦ ମାଡ଼ିଲା । କୋହ ଚାପି ରଖିଲି; କାଳେ ମୋର ଦୁର୍ବଳ ମନର ପରିଚୟ ପାଇବେ । ଯାହାହେଉ, ଦାମ-ଭାଇଙ୍କର ଯେ ମୋ ଉପରେ ମନଗଢ଼ା ସନ୍ଦେହ କେତେଦିନରୁ ଜାଗି-ଉଠିଛି, ଏଥିରେ ଭୁଲ ନାହିଁ । କିନ୍ତୁ ସେ ସନ୍ଦେହଟା କି ପ୍ରକାର ?

ପଚାରିଲେ, ଚୁପ ରହିଲୁ ଯେ ?

କହିଲି, ଅମୁଭାଇଙ୍କ ଠିକଣା ମୋତେ ଜଣାନାହିଁ ।

ସେ ହସିଉଠିଲେ ।

ମୋତେ ବିରକ୍ତ ଲାଗିଲା । ତାଙ୍କ ଆଗକୁ ଆସି ପଚାରିଲି ରାଗିଲା ସ୍ୱରରେ, ଆପଣ ଭାବିଛନ୍ତି, ମୁଁ ଅମୁଭାଇକି ଚିଠି ଲେଖିଛି ?

ଝବୁଡ ନ ହୋଇ କହିଲେ, ମୁଁ ସେକଥା କହୁନାହିଁ ।

ମୁଁ ଚୁପ ରହିଲି । ତାଙ୍କର ମନର ଧାରଣା ତାଙ୍କ ପାଖରେ ଥାଉ । ମୁଁ ଉପରେ ପଡ଼ି ତାଙ୍କୁ ଜବାବ ଦେବି ନାହିଁ । ବାରଆଡ଼କୁ ଚାଲିଯାଉଥିଲି, ପଛରୁ ଡାକିଲେ, ଗୀତା ଶୁଣ୍ ।

ଫେରି ଆସି ପଚାରିଲି, କଅଣ ?

ରାଗିଲୁ କି ?

ତାଙ୍କର ନରମ ସ୍ୱର, ସହାନୁଭୂତି ପରଶଲଗା ପ୍ରଶ୍ନଟି ଶୁଣି ଉତ୍ତର ଦେଇପାରିଲି ନାହିଁ । ମୋ ଆଖିରେ ଲୁହ ଛଳ ଛଳ ହେଲା ।

କହିଲେ, ଗୀତା, ତୋ ମନରେ ଦୁଃଖ ବା ଆଘାତ ଦେବାକୁ ମୁଁ ଆସି ନ ଥିଲି । ମୋର ଜଳିଲା ପୋଡ଼ିଲା ମନ ଆପେ ଆପେ ଅଭିମାନିଆ କଥା କେଇପଦରେ ପଦାକୁ ବାହାରି ଆସିଲା । ମନରେ ଧରିବୁ ନାହିଁ । ତୋତେ ଏକୁଟିଆ ପାଖରେ ଦେଖିଲେ ମୋର କେତେ କଥା ମନେ ପଡ଼ିଯାଏ । ମନ ପାଗଳ ହୋଇଉଠେ । ସେଇଥିପାଇଁ ତ ଇଆଡେ ଆସେ ନାହିଁ । ଆସିଲେ ବି ତୋ ସଙ୍ଗେ କଥାଭାଷା ନ କରି ଚାଲିଯାଏଁ । ନିଜର ଦୁଃଖ ନେଇ ମୁଁ ଥାଏଁ । ତୁ ମତେ ଘୃଣା କରୁ, କିନ୍ତୁ ମୁଁ, ନା, କହିବି ନାହିଁ । ଜାଣେ, ତୁ ହସିବୁ । ଯିଏ ଯାହାକୁ ଭଲ ପାଏ, ଆଉ ସେ ଯଦି ତାର ପ୍ରତିଦାନ ନ ପାଏ, ତାଆର ମନରେ ଈର୍ଷା ହୁଏ । ମୋର ଈର୍ଷାକୁ ମୁଁ ମୋର ପୋଡ଼ିଲା ପାଉଁଶ ତଳେ ଘୋଡ଼ାଇ ରଖିଥାଏଁ ।

ଆଖିରୁ ଲୁହ ପୋଛିଲି । ସେ ଉଠି ଠିଆ ହେଲେ । ମୋର ହାତଟି ଧରି କହିଲେ, ଯାଉଛି । ଖୁଡ଼ୀ ଆସିଲେ କହିଦେବୁ, ଗୋଟାଏ ଜରୁରୀ କାମରେ ଆସିଥିଲି । ବାପା ପଠାଇଥିଲେ । ପୁଣି ସଞ୍ଜବେଳେ ଆସିବି ।

ମନର କ୍ରୋଧ ଦମନ କରି କହିଲି, ବୋଉ ଆସୁଥିବ, ବସନ୍ତୁ ।

ହସି ହସି ମୋର ହାତଟିକୁ ଚୁପିଧରି କହିଲେ, ନିଜକୁ ଯେତେ ବୁଢ଼ିଆ ମଣୁଛୁ, ସେତେ ବୁଢ଼ିଆ ତୁ ନୋହୁଁ । ଘରେ ତୁ ଏକୁଟିଆ ଅଛୁ ପରା !

ସତେ କି କେଉଁ ଅନ୍ଧକାରେ ଧୀରେ ଧୀରେ ସେ ମୋର ହାତଟି ଛାଡ଼ିଦେଇ ବାଣ୍ଡ ଦୁଆରମୁହଁକୁ ଗଲେ । ମୁଁ ତାଙ୍କ ପଛେ ପଛେ କବାଟ ବନ୍ଦ କରିବାକୁ ଗଲି । ଦେଖିଲି, ବିମଳ ଭାଇଙ୍କ ସ୍ତ୍ରୀ ରେଣୁର ହାତ ଧରି ଆମରି ଘରଆଡ଼କୁ ମୋହିଁଛନ୍ତି । ବାମଭାଇଙ୍କୁ ଦେଖି କଅଣ ପଚାରିଲେ । ବାମଭାଇ ତାଙ୍କୁ କଅଣ ଉତ୍ତର ଦେଇ ଚାଲିଗଲେ ।

ତାଙ୍କୁ ଦେଖି ମୋର ପିଣ୍ଡରୁ ସତେ କି ଅଧେ ପ୍ରାଣ ଉଡ଼ିଗଲା । କବାଟ ଖୋଲି ତାଙ୍କୁ ଅପେକ୍ଷା କରି ରହିଲି ।

## —ଅଣତିରିଶି—

ବିମଳଭାଇଙ୍କ ସ୍ତ୍ରୀଙ୍କୁ ଆଦର କରି ନେଇ ପିଣ୍ଡାରେ ବସାଇଲି । ରେଣୁ ତାଙ୍କ ପାଖରେ ବସିଲା । ଭାବୁଥାଏଁ, ଅଦିନିଆ ମେଘପରି ହଠାତ୍ ସେ ଆମ ଘରକୁ ଆସିଛନ୍ତି କାହିଁକି ? ଦିନେ କାଳେ ତାଙ୍କର ପାଦ କହାରି ଘରେ ପଡ଼େ ନାହିଁ । ହିଂସା କରିବାର କିଛି ନ ଥିଲେ ମଧ୍ୟ ଗର୍ବରେ ମନକୁ ମନ ଫୁଲି ଉଠୁଥାନ୍ତି ସବୁଦିନେ । କାହାର ଆନନ୍ଦ କି ଶିକ୍ଷା ତାଙ୍କ ଆଖିରେ ଯାଏନାହିଁ ।

ସେ ଗମ୍ଭୀର ହୋଇ ବସିଥାଆନ୍ତି । ମୁଁ ଡର ଡର ସବଗମ୍ଭୀନ ହସ ଓଠ ଉପରକୁ ଟାଣିଆଣି ପଚାରିଲି, ଅପରୂବ କୁଆଡ଼େ ? ହନେ କାଲେ ତ ପଚାର ନାହିଁ, ଘଉଜବୋଉ ।

କଳା ମେଘରେ ବଜୁଳି ଖେଳିଗଲା ପରି ତାଙ୍କ କଳା ମିଚମିଚ ମୁହଁରେ ଦାନ୍ତ ହ ପାଟି ଖୋଲିଗଲା । ଆଖି ମିଟିମିଟି କରି ନାକ ଫୁଲାଇ କହିଲେ, ତମକୁ ଦେଖିବାକୁ ପଗ ଆସିଲି ଗୋ, ଖୁଡ଼ୀ କାହାନ୍ତି ?

ସମ୍ପର୍କରେ ସେ ଥଟ୍ଟା ହେବେ । ପରିହାସ କରି ପଚାରିଲି, ଶୁଣିଥିଲ କି ଆମେ ବାଧକା ପଡ଼ିଛୁଁ ?

ସେମିତି କିଛି ଶୁଣି ନ ଥିଲି । ତମକୁ ଦେଖି ମନେ ହେଉଛି, ତମେ ବାଧକା ପଡ଼ିଥିଲ ।

ରେଣୁ ତାଙ୍କ କଥାରେ କଥା ମିଶାଇ କହିଲା, ହଁ ଲୋ ଗୀତା ଅପା, ତତେ ଦେଖିଲେ ଚିହ୍ନି ହେଉନାହିଁ ! ତୁ ଶୁଖି-ଯାଇଛୁ ।

କମଳାଭାଇଙ୍କ ସ୍ତ୍ରୀ ପୁଣି ହସିଲେ । କହିଲେ, ଆଲୋ, ତୁ ଜାଣିବୁ କଅଣ ? ଲୁଣ ଖାଏ ହାଣ୍ଡି, ଚନ୍ଦା ଖାଏ ଚଣ୍ଡି । ପିଲାଟାର କଣ୍ଠା ଦୋହଲିଲାଣି । ଖୁଡ଼ୀ କାହାନ୍ତି ଗୀତା ? ତାଙ୍କୁ ଗୋଟିଏ ଗୁପ୍ତ କଥା ପଚାରିବାକୁ ଆସିଥିଲି ।

ଗୁପ୍ତ କଥା ! ବୋଉ ସଙ୍ଗେ ଏଙ୍କର ପୁଣି ଗୋଟାଏ ଗୁପ୍ତ କଥା କଅଣ ଥାଇପାରେ ? ନିଶ୍ଚୟ କିଛି କାଣ୍ଡ ଘଟିଛି । କହିଲି, ବୋଉ ରାଧାଘରକୁ ଯାଇଛି ।

ରାଧା ନାଁ ଶୁଣି ତାଙ୍କ ମୁହଁ କେଶରା ପଡ଼ିଗଲା । ସେ ଆଗ୍ରହ-ଭଙ୍ଗା ସ୍ୱରରେ ପଚାରିଲେ, କାହିଁକି ?

କହିଲି, ଜାଣେ ନାହିଁ ।

କେତେବେଳେ ଆସିବେ ?

କହିଲି, କେତେବେଳୁ ତ ଗଲେଣି, ଆସୁଥିବ ।

ଆଶ୍ଚର୍ଯ୍ୟ ହେଲାପରି ମନକୁ ମନ କହିଉଠିଲେ, କେତେ-ବେଳୁ ଗଲେଣି ? ମୋ ଆଡ଼କୁ ଅନାଇ ପଚାରିଲେ, ବାମ ଆସିଥିଲେ ଯେ !

ଉତ୍ତର ଦେବାକୁ ଭାଷା ଖୋଜି ପାଇଲି ନାହିଁ । ଯେଉଁ କଥାକୁ ଡରୁଥିଲି ତାହାହିଁ ହେଲା ଶେଷକୁ । ମୁହଁ ଟାଣ କରି କହିଲି, ହଁ, ସେ ଆସିଥିଲେ ।

ଆମୋଦିତ ହୋଇ କହିଲେ, ଓ, ତାଙ୍କର ପାଇଁ ପିଣ୍ଡାରେ ସପ ପଡ଼ିଥିଲା ପରା, କାଚ ଥାଳିଆରେ ଗୁଆ ବଡ଼ା ହୋଇଥିଲା ! ତୁମେ ତାଙ୍କୁ କଥା କହ ଗୀତା, ଆଉ ଲୁଅ ନାହିଁ ?

ମୋ ମୁହଁ ଶୁଖିଗଲା । ଏତେବେଳେକେ ବୁଝିଲି, ତାଙ୍କର ଉଦ୍ଦେଶ୍ୟଟା ସେତେ ଭଲ ନୁହେଁ । ମୋଉତ୍ତର ମୁହଁରୁ ବେଣୁ ଆଗରେ ଶୁଣି କଥାକୁ ବଡ଼ କରି ଗାଁର ପାଞ୍ଚଜଣଙ୍କ ପାଖରେ ଦୁର୍ନାମ କରିବାକୁ ସେ ଏଡ଼େ ବ୍ୟଗ୍ର ହୋଇ ଧାଇଁ ଆସିଛନ୍ତି । ତଥାପି ଭଲରେ ଯେତେବେଳେ ପଚାରୁଛନ୍ତି, ଉତ୍ତର ନ ଦେଲେ ନ ଚଳେ । ଦୁର୍ନାମ କରିବେ ବୋଲି ତ ମନ ଇଚ୍ଛା କରନ୍ତି ।

କହିଲି, ପିଲାଦିନୁ ତାଙ୍କୁ ମୁଁ ଆଉ ଲୁଏ ନାହିଁ, କଥା କହେଁ ।

ଥଟ୍ଟା କରି କହିଲେ, ଜନ୍ମରୁ କିଏ କାହାକୁ ଆଉ ଲୁଏ ନାହିଁ । ଝିଅପିଲାର ବୟସ ହେଲେ ମଣିଷର ଗୁଳ ପଡ଼ିଲେ ତ ଲାଜ ମାଡ଼େ । ଗାଁରେ ଏତେ ଲୋକ ଅଛନ୍ତି, ସମସ୍ତଙ୍କୁ କାହିଁକି ଲୁଚ, ଏକା ଏଇ ବାମକୁ କଥା କହ ବା ?

ରାଗରେ ମୋର ବ୍ରହ୍ମ ଜଳଉଠିଲା । ମନରେ କୁତ୍ସିତ ଧାରଣା ନେଇ ସେ ଆସି ତର୍କ ତାର୍କରେ କଥା କହୁଛନ୍ତି । ତାଙ୍କୁ ମୁଁ କି ଉତ୍ତର ଦେବି ? କଅଣ ଗୁଡ଼ାଏ କହି ପକାଇବି ବୋଲି ଭାବିଥିଲି । ରାଗକୁ ଦମନ କରି ଥରିଲା କଣ୍ଠରେ କହିଲି, କାହିଁକି, କ୍ଷତି କଅଣ ହେଲା ? ଦାମଭାଇ ମତେ ନିଜର ଭଉଣୀ ପରି ଭଲ ପାଆନ୍ତି । ମୁଁ ତାଙ୍କୁ ସେମିତି ଭକ୍ତି କରେଁ ।

ମୋ ତୁଣ୍ଡରୁ କଥା ଛଡ଼ାଇ ନେଇ କହିଲେ, ହଁ, ହଁ, ସେଇଥିପାଇଁ ତମକୁ ବାହା ହେବାକୁ ଧନେ ସେ ଝୁଙ୍କ ଧରି ବସିଥିଲେ ପରା । ତମ ଦୋଷ ମୁଁ ଦେଉନାହିଁ ଗୀତା । ଖୁଡ୍ଡୀ ଭଲ ମଣିଷ । ଅନ୍ଧାର ଆଲୁଅ ତାଙ୍କ ଆଖିରେ ସବୁ ସମାନ । ହେଲେ, ତାଙ୍କର ବୁଝିବା ଦରକାର, ଝୋଟକୁ ନିଆଁ ଖରି, ପୋଡ଼ିଯାଏ ଫର୍ ଫର୍ ।

ରେଣୁ କହିଲା, ତମେ ଗୀତା ଅପା ସାଙ୍ଗରେ ଏତେ ଲାଗ କାହିଁକି ? ଯୋଉଥିପାଇଁ ଆସିଥିଲ ସେ କଥା କହୁ ନା ।

ଦମନାଭାଇଙ୍କ ସ୍ତ୍ରୀ କହିଲେ, ଆଲୋ ରେଣୁ , ଗୀତା ମୋର ନଣନ୍ଦ ଲେଖା; ତା ସଙ୍ଗେ ଟିକିଏ ଥଟ୍ଟାରେ ଲଗାଇବାକୁ ମନ ହୁଏ । ଲୋକେ ପଛେ ଅବଗୁଣ ପାଆନ୍ତୁ, ମୁଁ ଭଲ କଥା କହେଁ । ତୁ ସିନା ପିଲାଲୋକ, ଗୀତା କଣ୍ଟୁ ପିଲାଟୁଆ ନୁହଁ । ସେ କଅଣ ଜାଣେ ନାହିଁ, ନବୋଲା ଘରେ ଠୋକାଠା ପାଖରେ ଠୋକା, ପରକୁ ପର, ଲାଜ ସଙ୍କୋଚ ନାହିଁ, ଡର ଭୟ ନାହିଁ, କଅଣ ହୁଏ ?

ହତାଶ ହୋଇ ବସିପଡ଼ିଲି ତାଙ୍କରି ପାଖରେ । ବୋଉ ଉପରେ ରାଗ ହେଲା । ଘଣ୍ଟାଏ ହେଲା ଗଲାଣି, ଏତେବେଳଯାଏ ଫେରୁନାହିଁ । ସେ ଥିଲେ ଦମନାଭାଇଙ୍କ ସ୍ତ୍ରୀ କଣ ପାଣିରେ ସର

ପକାଇ ମୁହଁକୁ ଗୁହୁଁ ଗୁହୁଁ ଏପରି ନନ୍ଦା କରି ଚରିତ୍ର ଉପରେ ଆଞ୍ଚ ଦେଇ କଥା କହିପାରନ୍ତା ? ଯାହା ହେଉ, ମୋର ସହିବାର ସୀମା ଟପିଲା । ଧୈର୍ଯ୍ୟ ଭଙ୍ଗିଲା । ଦୁର୍ନାମ ତ କଲେଣି ଆଉ ଅଧିକ କଅଣ କରିବେ ? ମୁହେଁ ମୁହେଁ ଜବାବ ଦେବି । ଆଖିରେ ଲୁହ ଅଟକାଇ ଥରିଲା ସ୍ୱରରେ ପଚାରିଲି, କଅଣ ହୁଏ ଭାଉଜ-ବୋଉ ?

ମୋ ଓଠରେ ହାତ ଦେଇ କହିଲେ, ଆହା ହା, ଜାଣନାହିଁ ସତେ ! ତମ ଆଖି ମୁହଁ ତ କହିଦେଉଛି । ଆଗୋ ଗୀତା, ତମର କି ଦୋଷ ? ବୟସ ହେଲେ ସଭିଙ୍କ ମନ ଅରମାକୁ ଧାଏଁ । ତା ଆଗରୁ ବୁଢିଆ ଗଉଡ଼ ଦମ୍ଭ ଖୁଣ୍ଟ ଦେଖି ଟାଣ ପଘାରେ ଗାଈକୁ ବାନ୍ଧେ । ସେତକ ନ କଲେ ଗାଈ ମାଈର ଦୋଷ ଗୁଣ ଧରିବ କିଏ ? ଆମେ କଅଣ ଝିଅ ହୋଇ ନ ଥିଲୁଁ କି !

ତାଙ୍କୁ କିଛି କହିବା ଆଗରୁ ସେ ଉଠି ଠିଆ ହେଲେ । କହିଲେ, ଆସ ରେଣୁ ଯିବା । ଝୁଡ଼ୀ ଆସୁଁ ଆସୁ କେତେ ଡେରି ହେବ । ଘରଧନ୍ଦା ଛୁଡ଼ି ଆସିଥିଲି । ଆସ ।

ସେ ଦାଣ୍ଡ କବାଟ ଆଡ଼କୁ ଗଲେ । ରେଣୁ ଉଠିଲା । ମୁଁ ତା ହାତ ଧରି ଅଟକାଇ କହିଲି, ତୁ ରହ ରେଣୁ, ପଛେ ଯିବୁ ।

ମୋ ମନର ଦୁଃଖ ରେଣୁ ବୁଝି କହିଲା, ତମେ ଯାଅ, ମୁଁ ପଛରେ ଯିବି ।

ମୁହଁ ବୁଲାଇ ବିମଳାଭାଇଙ୍କ ସ୍ତ୍ରୀ କହିଲେ, କାହିଁକି ବା ? ଗୀତା କଅଣ ତୋ ସାଙ୍ଗ ସାରିସା ? ତୋ ବୋଉ ଶୁଣିଲେ ଗାଳି ଦେବେ ।

ରେଣୁ ମୁହଁ ଫଣ ଫଣ କରି କହିଲା, ବୋଉ ତମକୁ ଡାକ୍ରେ ମୋ ଗୀତା ଅପାକୁ ବି ଡାକ୍ରେ । ତମ ସଙ୍ଗେ ଆସିଥିଲା ଶୁଣିଲେ ସେ ବେଶି ରାଗିବ ।

କହିଲେ, ଜାଣିଥିଲୁ ତ ଆସିଲୁ କାହିଁକି ?

ରେଣୁ କହିଲା, ଆସିଥିଲି କଅଣ ତମକୁ ଜଗିବାକୁ ? ଗୀତା ଅପା ପାଖକୁ ଆସୁଥିଲି । ତମ ସଙ୍ଗେ ଦେଖା ହେଲା ସିନା ।

କହିଲେ, ଯାଉଛୁ ଲୋ, ତୋ ବୋଉ ଆଗେ ସବୁ କହିବ ।

ରେଣୁ କହିଲା, ହଉ ଯା—ଯା ।

—ତିରଣି—

**ରେଣୁ** କବାଟ ବନ୍ଦ କରି ମୋ ପାଖକୁ ଫେରିଆସିଲା । ପିଲଟାଏ ସେ, ମୋ ମନ ଭିତରର କୁହୁଳା ଦୁଃଖ କଅଣ ବୁଝିବ ? ମୋ ଆଖିରେ ଲୁହ ଦେଖି ଏଣୁ ତେଣୁ କଅଣ ବୁଝାଇ କହିଲା, ମନେ ନାହିଁ । ଲୁହ ପୋଛି କହିଲି, ମିଛ ଅପବାଦ ଦେଇ ମୋର ଦୁର୍ନାମ କରିବାକୁ ସେ ଆସିଥିଲେ, ରେଣୁ । ହଉ, ତାଙ୍କର ମନ ବୋଧ ହେଉ ।

ରେଣୁ ବିରକ୍ତ ହୋଇ କହିଲା, ତୁ ଭାରି ଓଲୁ । ମୁହେଁ ମୁହେଁ ଘୁରିପଦ ବତାଇ ଦେଲୁ ନାହିଁ ? ମୁଁ ହୋଇଥିଲେ ତାର ଖଣ୍ଡିଆ ଚୁଟି କେବଳ ଛିଣ୍ଡାଇ ଦେଇଥାନ୍ତି । ଭାରି କୁହାଳିଆ ହୋଇଛି ।

କହିଲି, ରେଣୁ, ଯାହାର କପାଳ ପୋଡ଼ା, ନ କହିଲା ଲୋକ ତାକୁ ଦେଖିଲେ ଖୁଣାଖୁଦ କହିବେ । ମନରେ ଦୁଃଖ ହୁଏ,

କାନ୍ଦ ମାଡ଼େ । ସେଥିକ କଅଣ କରିବା ? ବିମଳା ଭାଇର ସ୍ତ୍ରୀ ଆଜ ଏଇଥିପାଇଁ ଆସିଥିଲି ।

ରେଣୁ କହିଲି, ନାଇଁ ଗୀତା ଅପା, ସେ ଆସିଥିଲେ ଭିନେ କାରଣରେ । ବାଟରେ ତୋ ରୂପଗୁଣକୁ ପ୍ରଶଂସା କରୁଥିଲେ । କହୁଥିଲେ, ତାଙ୍କର ଗୋଟିଏ ଦୂର ସମ୍ପର୍କରେ ଦିଅର ଅଛନ୍ତି । ବାରଦା ଗାଁରେ ଘର । ସେହି ବିଷୟରେ ତୋର ବାହାଘର ପ୍ରସ୍ତାବ ନେଇ ସେ ଆସିଥିଲେ ।

ବାରଦା ନାଁ ଶୁଣି ମୁଁ କଥାଟା ବୁଝିନେଲି । ନିଶ୍ଚୟ ଅଜୁ-ଭାଇର ବାହାଘର ପ୍ରସ୍ତାବ ନେଇ ସେ ଆସିଥିଲେ । ଆଖି ଆଗରେ ଅମୁଭାଇର ସୁନ୍ଦର ହସ ହସ ମୁହଁଟି ଠିଆ ହେଲା । ମନ ମଉଳିଗଲା । କଥାର ଗତି ବଦଳାଇବାକୁ ମୁଁ ଏଣୁ ତେଣୁ ପଚାରିଲି । ସେ ମୋ କଥାର ଉତ୍ତର ନ ଦେଇ ଗେହ୍ଲାଳିଆ କରି ପଚାରିଲା, ତୋ ମନକୁ କେମିତି ପାଉଛି ଗୀତା ଅପା ? ଭଲ ଘର, ଭଲ ବର । ହେଲେ ତୋ ବରଟା କଳା ମିଚମିଚ ଭୁଷୁଣ୍ଡା ଗଧ ହେବ । ମୁଁ ଦେଖିଛି ଯେ—

ହସି ହସି ତା ଗାଲରେ ହାତ ମାରି କହିଲି, ତୁ ଭାରି ଦୁଷ୍ଟ ରେଣୁ ।

ସେ ଜଗରି ଧରି ପଚାରିଲା, କହ ଅପା, ତୋ ମନକୁ କେମିତି ପାଉଛି ? କଳା ମଣିଷ ଦେଖିଲେ ତୁ ପରା ଚିଡ଼ୁ ।

ଗୁନ ଗୁନ ତା କାନପାଖରେ କହିଲି, ରେଣୁ, ବଡ଼ ହେଲେ ବୁଝିବୁ । ଯିଏ ଯାହା ଖୋଜେ, ସେ ତା ପାଏ ନାହିଁ । ଯାହା କପାଳରେ ଥିବ, ହେବ । ସେଥିକ ଆଗରୁ ଭାବ ବସିଲେ ଲାଭ ନାହିଁ ।

ରେଣୁ କହିଲା, କନୁ, କଳା ମଣିଷ···

କହିଲି, ବାଛ ନା କେ, କାହା କପାଳରେ କଅଣ ଅଛି, କିଏ ଜାଣେ ?

ସେ ହସି ହସି ମୋଅର କୋଳରେ ଲେଟିପଡ଼ିଲା ।

ବୋଉ ଡାକିଲା ବାଣ୍ଡିରୁ, ଗୀତା··· ।

ଜବାବ ଦେଲି, ଯାଉଛି ।

ରେଣୁର କାନରେ କହିଲି, ତତେ ମୋ ରାଣ ରେଣୁ, ବିମଳା-ଭାଇଙ୍କ ସ୍ତ୍ରୀ ଯାହାସବୁ କହିଗଲେ, ବୋଉକୁ କହିବୁ ନାହିଁ । ତା ମନରେ ଦୁଃଖ ହେବ ।

କବାଟ ଖୋଲିଲି । ବୋଉ ଓ ରାଧା ଦହେଁ ଘରକୁ ଆସିଲେ । ରେଣୁକୁ ଦେଖି ରାଧା କହିଲା, କ ଗୋ ଦେଈ, ତୁମେ କୁଆଡ଼େ ?

ରେଣୁ କହିଲା, ଆସିଥିଲି ବିମଳାଭାଇ ଭାରିଯା ସାଙ୍ଗରେ । ବଡ଼ମାକୁ ଅପେକ୍ଷା କରି ସେ ଏଇକ୍ଷଣି ଗଲେ । ମୁଁ ରହିଛି ତୋ ସଙ୍ଗେ ଯିବି ।

ରାଧା ମୁହଁ ମୋଡ଼ି କହିଲା, ସେଇଟା କାହିଁକି ଆସିଥିଲା ବା ?

ରେଣୁ ତାଙ୍କର ଆସିବା ଉଦ୍ଦେଶ୍ୟ କହିଲା । ବୋଉ କହିଲା, ଅଟକାଇଲୁ ନାହିଁ, ରେଣୁ ! ବିମଳାର ସ୍ତ୍ରୀ ଘର ଭଲ ମଣିଷ ।

ରାଧା ଗୋଟିଏ ଟୋକେଇରେ ଗୁଡ଼ଉଳ ଆଣିଥିଲା । ପିଣ୍ଡା ଉପରେ ଥୋଇଦେଇ କହିଲା, ନିଅ ଦେଈ । ଆଗ ଗୋଷେଇ ବସେଇବଟି । କାଲି ରାତିରୁ ଉପାସ ପଡ଼ିଛ, ମତେ ଟିକିଏ ଖବର ଦେଲ ନାହିଁ ?

ଗୁଡ଼ଉଳ ଟୋକେଇଟି ନେଇ ରୋଷଘରକୁ ଗଲି । ରାଧା ରେଣୁକୁ ସଙ୍ଗରେ ନେଇ ଫେରିଲା ।

ବୋଉ ଆସି କହିଲା, ଝିଅ ଲୋ, ଥାଳଟି ବନ୍ଧା ନେଇ ଟଙ୍କା ଦି ତିନଟା ପାଇଁ ଗୁଧା କେତେ ଘର ବୁଲିଲା ! ମୁଁ ତାଆର ଘରେ ଅପେକ୍ଷା କରି ରହିଲି । ସେଥିପାଇଁ ଡେରି ହେଲା । ଜଗବନ୍ଧୁ ବରଟ ଥାଳଖଣ୍ଡି ରଖି ଟଙ୍କା ଦିଓଟି ଦେଲା । ଗୋଟିଏ ଟଙ୍କା ଗୁଧାକୁ ଦେଲି । ନଉ ନଥିଲା, କେତେ କୁହାବୋଲାରେ ନେଲା । ଠାକୁରେ ଏମିତି ଆଉ କେତେଦିନ ଚଳାଇବେ ମା ? ବାପା ତୋର ଚାଲିଗଲେ । କେଡ଼େ ନଦାରୁଣ ସେ ! ମୋତେ ଭଲା ସଙ୍ଗରେ ନେଇଯାଇଥାନ୍ତେ ।

ବୋଉକୁ କହିଲି, ମୁକୁଳେଇବାର ଆଶା ନାହିଁ । ବନ୍ଧା ଦେଲୁ କାହିଁକି ? ବିକି କରିଦେଇଥିଲେ ଭଲ ହୋଇଥାନ୍ତା ।

ବୋଉ କହିଲା, କିଣିବାକୁ ଏ ଗାଁରେ କେହି ରାଜି ହେଲେ ନାହିଁ ।

କଥାର ସୂଅ ବଦଳାଇ କହିଲି, ଭାଇ ଗଲାପରେ ଦାମଭାଇ ଆସିଥିଲେ । ମଦନ ଜେଠା କାହିଁକି ପଠାଇଥିଲେ । ଅନେକ ସମୟ ଅପେକ୍ଷା କରି ସେ ଚାଲିଗଲେ ।

ବୋଉ ପଚାରିଲା, କାହିଁକି ପଠାଇଥିଲେ ?

କହିଲି, ମୋତେ କିଛି କହିଲେ ନାହିଁ । ସଞ୍ଜକୁ ଆସିବେ କହିଛନ୍ତି ।

—ଏକତିରିଶି—

ସଞ୍ଜବେଳେ ଦାମଭାଇ ଆସିଲେ ।

କମଳାଭାଇଙ୍କ ସ୍ତ୍ରୀ ସେଦିନ ମୋତେ ଯେଉଁ ଶିକ୍ଷା ଦେଇ-ଯାଇଥିଲା ତାଆର ଫଳରେ ମୁଁ ଆଜି ତାଙ୍କ ପାଖକୁ ନ ଯାଇ

ବୋଷଘରକୁ ଆସିଲି । ଆଉ୍‌ଡ଼ହେବା ଲୋକର ଆଗକୁ ହଠାତ୍ ଗଲେ ଯେପରି ଖରାପ ଲାଗେ, ଆଉ୍‌ ନ ହେବା ଲୋକ ପାଖରୁ ଦୂରେଇ ରହିଲେ ସେହିପରି ଲାଗେ । କାଳେ ସେ ମୋ ପାଖକୁ ଡ଼ାକିବେ, କଅଣ ପଚାରିବେ, ଜବାବ ଦେବାକୁ ତ ପଡ଼ିବ ।

ଦାମଭାଇ ମୋତେ ଆଉ ଡାକି ନାହାନ୍ତି । ପିଣ୍ଡାରେ ବସି ବୋଉ ସାଙ୍ଗେ କଥାଭାଷା ହେଲେ । ମୁଁ ରୋଷଘରେ ବସି ସବୁ ଶୁଣୁଥାଏ ।

ଦାମଭାଇ କହିଲେ, ଆଜି ସକାଳେ ବାପା ବୋଉ ଦୁହେଁ ମୋତେ ଡାକି ତମ ପାଖକୁ ପଠାଇଥିଲେ । ବାପା କହିଲେ, ହେଲଦାଦ ତ ଚାଲିଗଲେ । ଆଉଁ ଆଉଁ ଝିଅଟାକୁ ଉଠାଇ ଦେଇ ଗଲେ ନାହିଁ । ଭଲ ଘର ଭଲ ବର ଖୋଜି ଖୋଜି ଝିଅକୁ ଦରବୁଡ଼ୀ କଲେ । ଯାହା ହେବାର ତ ହୋଇଛି । ଏବେ ଯେ କୌଣସି ଜାଗାରେ ନିମିତ୍ତ ଉଠାଇବାକୁ ହେବ । ଆହୁରି ଡେରି କଲେ ନାଁ ନିନ୍ଦା, ଗାଁ ନିନ୍ଦା, ବାଛନ୍ଦ ପଡ଼ିବ । ବାପା ପୁଣି କହିଲେ, ଆମର ଗୁମାସ୍ତା ହାଡ଼ବନ୍ଧୁର ସାନଭାଇ ଜଟିଆ ବିଷୟରେ ସମ୍ବନ୍ଧ କଲେ ଭଲ ହେବ ।

ପ୍ରସ୍ତାବ ଶୁଣି ଦାମଭାଇଙ୍କ ବୋଉ କୁଆଡ଼େ ବିରକ୍ତ ହେଲେ । କହିଲେ; ଜଟିଆଟା ଫମ୍ପାନ୍ତି ପୁରୁଷ, ଶ୍ୱାସ ରୋଗୀ, ପ୍ରାଣ ଯାଉଛି କି ଆଉଛି, ତହିଁରେ ପୁଣି ଗଜମୂର୍ଖ । ଚାରି ପଇସା ରୋଜଗାର କରିବାର ଶକ୍ତି ନାହିଁ । ହାଡ଼ିଆ କଅଣ ତାକୁ ସବୁଦିନେ ପୋଷିବ ?

ତାଙ୍କ ବାପା ଚିଡ଼ି ଉଠିଲେ । କହିଲେ ପ୍ରସ୍ତାବ ପଡ଼ୁ ପଡ଼ୁ ତମେ ଆଗରୁ ଭାଙ୍ଗୁଛ କାହିଁକି ? ତାଙ୍କର ଯେଉଁ ଅବସ୍ଥା, ଝିଅର ଯେଉଁ ବୟସ, ସେଥିରେ ତାଙ୍କୁ ଆଉ ଅଧିକ ଭଲ ପାତ୍ରଟାଏ ମିଳିବ ନାହିଁ । ଭାଗ୍ୟରେ ଥିଲେ ସେଇ ଜଟିଆକୁ ପୁଣି ଦିନେ ଦେଖିବ ।

ତାଙ୍କ ବୋଉ ଶୁନ ରହିଲେ । ତାଙ୍କ ବାପା ତାଙ୍କୁ ଡ଼ାକି କହିଲେ, ତୁ ଗୀତା ବୋଉର ପାଖକୁ ଯା, ତାଙ୍କୁ ବୁଝାଇ କହିବୁ । ଏ ପ୍ରସ୍ତାବରେ ସେ ମଙ୍ଗନ୍ତୁ । ହାତରେ ଗୋଡ଼ରେ ଲଗିବ ନାହିଁ । ସୁରୁଖୁରୁରେ ବାହାଘର ହୋଇଯିବ ।

କହ ଖୁଡ଼ୀ, ତମର ମତ କଅଣ ?

ବୋଉ ଉତ୍ତର ଦେଇପାରିଲା ନାହିଁ । ଭାବିବାକୁ ଲଗିଲା । ଅନ୍ଧାର ଘରେ ମୁଁ କାନ ପାରି ବସିଥାଏଁ । ବୋଉ କଅଣ କହିବ ଶୁଣିବାକୁ ଅଧୀର ପ୍ରାଣ ଠାକ ରହିଥାଏ । ସତେ ସେ ମଙ୍ଗିବ ?

ପଦଟିଏ ହିଁରେ ମୋର ଜୀବନ ଯୌବନ, ଆଶା ଅଭିଳାଷ ପୋଡ଼ ଛାରଖାର କରିଦେବ । ପ୍ରତିବାଦ କରିପାରିବ ନାହିଁ । ମାତରରେ ମଥା ପୋତି ବିନା ଦୋଷରେ ନିହିତ ଦଣ୍ଡକୁ ଗ୍ରହଣ କରିବ ରକ୍ତମାଂସରେ ଦେହଟା ମୋର ଗଢ଼ିଛି ଯେଉଁ ବୋଉ, ତାର ଅବାଧ ମୁଁ ହୋଇପାରିବ ନାହିଁ । '

ଦୀର୍ଘଶ୍ୱାସ ଛାଡ଼ ବୋଉ ପଚାରିଲା, ଦାମ, ମୋର ଜବାବ ମାଗିବା ଆଗରୁ ମୁଁ ତମକୁ ପଚାରୁଛି, ତମେ କହ, ତମର ମନ ମାନୁଛି ? ତମର ଯଦି ମନ ମାନେ ମୋର ଆପତ୍ତି ରହିବ ନାହିଁ ।

ଆଗ୍ରହରେ ଦାମଭାଇଙ୍କ ଉତ୍ତରକୁ ଅପେକ୍ଷା କରି ରହିଲି । ଦାମଭାଇ ପିଲାଦିନୁ ମୋତେ ଏତେ ଭଲ ପାଅନ୍ତି । ଦାମଭାଇ, ସଂସାରରେ ଯେଉଁ ଜଣକ, ଯାହାଙ୍କ ଆଗରେ ନିଃସଙ୍କୋଚରେ ମନପ୍ରାଣ ଖୋଲି ମୁଁ କଥା କହେଁ। ରାଗବେଗରେ ବିରକ୍ତ ହୁଏ । ତାଙ୍କର ଅଶ୍ଲୀଳ ଅଶା, କୁତ୍ସିତ ଆକର୍ଷଣକୁ ନିଷ୍ଠୁର ଭାବରେ ଠେଲି ଦିଏଁ । ତଥାପି . ସେ ନିଶ୍ଚୟ ଜାଣିଥିବେ, ମୁଁ ତାଙ୍କୁ ଭଲ ପାଏଁ, ଭଲ ପାଏଁ ସେ ମୋତେ ବିରକ୍ତ କରନ୍ତି ବୋଲି ।

ତାଙ୍କର ମତାମତ ଉପରେ ନିର୍ଭର କରି ବୋଉ ନିଜର ଇଚ୍ଛା ପ୍ରକାଶ କରିବ । ବୋଉ ଜାଣେ, ଦାମଭାଇ ମୋତେ ଭଲ ପାଆନ୍ତି । ତାଙ୍କର ପ୍ରତିଶୋଧ ନେବାର ବେଳ ଆସିଛି । ଅଜଣା ସ୍ୱାମୀର ଗୋଡ଼ତଳେ ମୋର ଯୌବନ, ପ୍ରେମ ଉତ୍ସର୍ଗ କରିବି ବୋଲି କେତେ ଆକର୍ଷଣ, କେତେ ପ୍ରଲୋଭନକୁ ଗୋଡ଼ରେ ଦଳିଛି । ଦାମଭାଇ ଏହା ଜାଣନ୍ତି । କି ମତ ଦେବେ ଜାଣିବାକୁ ଉଦ୍‌ବଗ୍ନ ହୋଇ ରହିଲି ।

ସେ ବ୍ୟସ୍ତ ହୋଇ କହିଲେ, ଖୁଡ଼ୀ, ମୋର ମତାମତ ପଚାର ନାହିଁ । ମୋର ମତାମତରେ କିଛି ଯାଏ ଆସେ ନାହିଁ । ଦିନେ ମୋ ମନକଥା କହିଥିଲି, ସମସ୍ତେ ଏହା ଜାଣନ୍ତି । ସମସ୍ତେ ହସିଥିଲେ, ଏକା ମୁଇଁ କାନ୍ଦିଥିଲି । ବାପାଙ୍କର ଅବାଧ୍ୟ ମୁଁ ହୋଇ ନ ଥିଲି । ଲାଜ ସଙ୍କୋଚରେ ମୁଁ ତମ ଆଗରେ ମୁହଁ ଖୋଲି କେବେ ମନର କଥା କହି ନ ଥିଲି । ସେ ସାହସ ମୋର ନଥିଲା । କାଳେ ତମେ କଅଣ ଭାବିବ, କାଳେ କହିବ, ମନରେ ଅପନା ଆଗ୍ରହ ଧରି ଦାମ ଘରକୁ ଆସେ, ଗୀତାକୁ ଭଲ ପାଏ । ମନକଥା ମୁଁ କହିଥିଲେ ଏ ଘରୁ ମୋର ସ୍ୱାଧୀନ ଚଳନ ଲୋପ ହୋଇଥାନ୍ତା । ଖୁଡ଼ୀ, ତଅଣ ପୋଡ଼ିଯାଇଛି, ମନ ମରି ଯାଇଛି । ଯାହା ହେବାର ହୋଇ ସାରିଛି । , ମୋର ମନର କାମନା ମୋର ଆଜିକାର ଆଗ୍ରହ ଓ ଆଶୀର୍ବାଦ ହେଉଛି, ଗୀତାଟି ଆନନ୍ଦରେ ରହୁ, ସୁଖରେ ରହୁ । ଏତିକି ଦେଖିଲେ ଜୀବନରେ ମୁଁ ଶାନ୍ତି ପାଇବି ।

ବୋଉ ତୁନି ରହିଲା । ଭାବିଲି, ସତେ ଦାମଭାଇଙ୍କ ମନରେ ଏତେ ଦୁଃଖ, ସତେ ସେ ଭଲ ପାଆନ୍ତି ?

ଦାମଭାଇ ପୁଣି କହିଲେ, ମୋର ମତାମତ ପଚାରୁଛ, ଖୁଡ଼ୀ ? କହୁଛି ଶୁଣ । ଜଟିଆ ଗୀତାର ଉପଯୁକ୍ତ ନୁହେଁ । ଲୋକେ କହୁଛନ୍ତି,

ଗୀତାର ବୟସ ବଢ଼ିଗଲେଇ ପଡ଼ିଲା, ଏଣିକି ନନ୍ଦା ହେବ । ବାପାଙ୍କର କଥା ମାନ ତମକୁ ମୁଁ ପଚାରିବାକୁ ଆସିଛି । ତମେ ଯାହା ଉତ୍ତର ଦେବ, ମୁଁ ତାଙ୍କୁ ସେଇଆ କହିବି ।

ବୋଉ କହିଲା, ଦୁନିଆଁ ଲୋକଙ୍କ ଆଖିରେ ଗୀତା ବର-ବୁଢ଼ୀ ହୋଇପାରେ ବାପ, ମୋ ଆଖିରେ ସେ କାଲିକା ପିଲା । ବାପାଙ୍କୁ କହିବ, ଲୋକେ ନନ୍ଦା କରିବେ ତ କରନ୍ତୁ । ଲୋକ-ନନ୍ଦାକୁ ଡରି ବାପ ନ ଥିଲା ଝିଅକୁ ପଙ୍କରେ ମାଡ଼ିଦେବ ନାହିଁ । ମୁଁ ଗରିବ ହେଲେ ମଧ୍ୟ ମୋ ମନ ତ ଗରିବ ନୁହେଁ ରେ ବାପ ! ମୁଁ ରାଜା ଜମିଦାର ଖୋଜୁନାହିଁ । ମୂଲଲାଗି ଚଳୁଥିବା ପିଲାଟିଏ ହେଲେ ହେଲା । ଚାରି ଅକ୍ଷର ପଢ଼ିଥିବ, ସ୍ୱାସ୍ଥ୍ୟ ଭଲ ଥିବ, ଚରିତ୍ର ସ୍ୱଭାବ ଭଲ ହୋଇଥିବ, ଏମିତିକା ପିଲାଟି ହେଲେ ଗୀତାକୁ ତା ହାତରେ ଦେବି । ନ ମିଳିଲେ ଗୀତା ଅଭିଆଡ଼ୀ ରହିବ । ମୋଓର ମରଣ ହେଲେ ତମର ଯେଉଁଠି ମନ ସେଇଠି ତାକୁ ଦେବ । ଦେଖିବାକୁ ମୁଁ ନ ଥିବି । ବାପାଙ୍କୁ ଏଇଆ କହିବ ।

ଦାମଭାଇ ଉତ୍ତର ନ ଦେଇ ବିଦାୟ ନେଲେ ।

ବୋଉ ମତେ ପାଖକୁ ଡାକିଲା । ମୁଁ ପିଣ୍ଡାକୁ ଯାଇ ତା ପାଖରେ ବସିଲି । ମୋ ମୁଣ୍ଡରେ ହାତ ବୁଲାଇ ଧୀରେ ଧୀରେ କହିଲା, ଶୁଣିଲୁ ତ ମା, ଦାମର କଥା ? ଆଜି ଯଦି ତୋ ବାପ ବଞ୍ଚିଥାନ୍ତେ, ସାଆନ୍ତେ ଏମିତି ଅପସନ୍ଦ ପ୍ରସ୍ତାବ ପଠାଇବାକୁ ସାହସ କରି ନ ଥାନ୍ତେ । ଆମର ସାହାଭରସା ଏକା ସେଇ ଭଗବାନ । ଯାହା ତାଙ୍କର ଇଚ୍ଛା । ତାଙ୍କୁ ହିଁ ଡାକ ।

ଦୁଇଧାର ଲୁହ ଗଡ଼ିପଡ଼ିଲା ମୋ ଆଖିରୁ । ମନ କହିଲା, ଭଗବାନ ! ନିଷ୍ଠୁର ସେ ଭଗବାନ । ବାପାଙ୍କୁ ମୋଠାରୁ ନେଇ

ଯାଉଛନ୍ତି । ଉହାଳ ବକାଳ, ଛଟପଟ, ଦହଗଞ୍ଜ କରି ଆମର ହାଟ ସେ ଦେଖୁଛନ୍ତି ।

ଦୟାମୟ ସେ ?

—ବଡଶି—

ଆହୁରି କେତେଦିନ ବିତିଗଲା । ଅଭାବରେ ପଡ଼ି ଘରର ଯାବତୀୟ ଚଳନ୍ତି ପଦାର୍ଥ ବନ୍ଧା ପକାଇ କଷ୍ଟେ ମଷ୍ଟେ ଦିନ କାଟିଲୁଁ । ଏହାପରି ଆଉ କେତେଦିନ ଚଳିବ ? ବସି ଖାଇଲେ ନଈବାଲି ସରେ । ରୋଜଗାର କରି ଘରକୁ ଦୁଇପଇସା ଆଣିବାକୁ କେହି ନାହିଁ । କାହା ଉପରେ ଆଶା ରଖି ଭବିଷ୍ୟତ ପାଇଁ ନିଶ୍ଚିନ୍ତ ରହନ୍ତୁ ? ଭବିଷ୍ୟତ କଥା ଭାବି ବା ଲାଭ କଅଣ ? ଯେତିକି ଆଗକୁ ଚାହେଁ, ସେତିକି ହତାଶିଆ ଲାଗେ ।

ରାଧା ଯଥାସାଧ୍ୟ ଆମକୁ ସାହାଯ୍ୟ କରେ । ଦୁଃଖୀ ସେ, ଦୁଃଖୀର ଦୁଃଖ ବୁଝେ । ମନ ଥିଲେ ବି ତା ପାଖରେ ଧନ ନାହିଁ । ସାହାଯ୍ୟ କରିବ କିପରି ? ଦେହ ପରିଶ୍ରମ କରିବା ଦ୍ୱାରା ଯାହା ହୁଏ ସେତିକି ।

ଗୋଟାଏ ଦୁର୍ନାମ ମୋ ନାମରେ ରଟିଯାଇଛି ଗାଁ ସାରା । ଯେଉଁ ଘଟଣାଟି ସେଦିନ ଘଟିଗଲା ତାଆରି ଫଳରୁ ବିମଳାଭାଇଙ୍କ ସ୍ତ୍ରୀ ମୋ ନାମରେ ଦୁର୍ନାମ ରଟାଇଲେ । ଯେଉଁ ବାହାଘର ପ୍ରସ୍ତାବ ନେଇ ଆସିଥିଲେ ତାକୁ ସେ ନିଜେ ଭାଙ୍ଗିଦେଲେ ।

ରାଧା କହୁଥିଲା ବୋଉକୁ, ଶୁଣିଲଣି ବିମଳା ଭାଉଜର ବିହପ, ଗୀତା ଆଉ ଦାମ ନାମରେ ଯେଉଁ କଥାମାନ ଉଠାଇଛି ଶୁଣିଲେ କାନରେ ହାତ ଦେବ ।

ଗଧା କହେ, ବୋଉ ଶୁଣେ, ଆଖିରୁ ଲୁହ ପୋଛେ ।

କଥାଟାକୁ ସେତେ ଗୁରୁତର ବୋଲି ଭାବି ନ ଥିଲି । କେଇଟି ଘଟଣାରୁ ପରେ ମୁଁ ବୁଝିପାରିଲି । ମିଛ ଅପବାଦ ଲୋକଙ୍କ ମନ ଉପରେ କି ପ୍ରଭାବ ପକାଏ ତାହା ମୁଁ ନିଜେ ଅନୁଭବ କଲି ।

ଦାମଭାଇଙ୍କ ପୁଅର ଏକୋଇଶା ।

ଗାଁଯାକର ଲୋକେ ନିମନ୍ତ୍ରିତ ହୋଇଛନ୍ତି । ମହାନ ଜେଠା ଆନନ୍ଦରେ ଶହ ଶହ ଟଙ୍କା ଖରଚ କରୁଛନ୍ତି । କିଏ ଜଣେ ଆସି ଆମକୁ ନିମନ୍ତ୍ରଣ କରିଗଲା । ବୋଉର ଭାବନା ପଡ଼ିଲା । ଦାମର ପୁଅ, ଗାଁ ସାଇପେ କେତେ ଆସିବେ, ଯାହାକୁ ଯାହା ମିଳିବ ଫଳେପୁଷ୍ପ ଉପହାର ଦେଇ ପୁଅକୁ ଦେଖିବେ । ଆମର ଘରେ ଖାଇବାକୁ ନାହିଁ । କଅଣ କରିବା ?

ବୋଉ କହିଲା, ନ ଯିବା ଭଲ ।

ମୁଁ କହିଲି, ବୋଉ, ନ ଗଲେ ଭଲ ହେବ ନାହିଁ । ଦାମଭାଇଙ୍କ ମନରେ କଷ୍ଟ ହେବ । ପୁଣି ଜାଣି ଜାଣି କାହିଁକି ଗାଁ ଲୋକଙ୍କ ପାଖରୁ ଅଲଗା ରହିବା, କହିଲୁ ? ଲୋକେ କଅଣ କହିବେ ? ତୁ ଗଧା ପାଖକୁ ଯା ।

ବୋଉ କହିଲା, ଅନ୍ତ ଅଳପରେ ଦଶଟି ଟଙ୍କା ନ ହେଲେ ଚଳିବ ନାହିଁ । ଘରେ କଅଣ ଅଛି ଯେ ବନ୍ଧା ଦେଇ କି ବିକିକରି ଟଙ୍କା ଆଣିବି ?

କହିଲି, ଅଛି ବୋଉ, ଯେତେ ଦିନଯାଏ ଗାଁ ଠାରେ ଘର କରି ରହିଥାଇଁ, ନିଜର ମାନ ମହତ ରଖି ଚଳିବାକୁ ଚେଷ୍ଟା କରିବା । ଶେଷକୁ ଅଭାବରେ ପଡ଼ି ଯଦି ଦାଣ୍ଡରେ ଠିଆ ହେବାକୁ ପଡ଼େ, ସେତେବେଳେ ଯାହା ଭଲ ଦିଶିବ କରିବା । ଆଜିହୁଁ ସେ କଥା ଭାବିବା ନାହିଁ ।

ଶରତବାବୁଙ୍କ ସ୍ତ୍ରୀ କଟକରେ ମୋତେ ଯେଉଁ ଦୁଲ୍ ହଳଟି ଦେଇଥିଲେ ତାକୁ କାନରୁ କାଢ଼ି ବୋଉକୁ ଦେଲି । ଅନିଚ୍ଛାରେ ବୋଉ ସେତକ ନେଇ ରୋଷେଇ ଘରକୁ ଗଲା । ମୁଁ ଦାଣ୍ଡ କବାଟ ବନ୍ଦ କରି ଘରେ ଏକୁଟିଆ ରହିଲି ।

ଖରାବେଳ ।

ନଈକୂଳିଆ ତାଇତ ପବନରେ ଘରର ମଥାନ ଦୋହଲି ଉଠୁଥାଏ, ଠିକ୍ ଯେପରି ମୋ ଛାତିର କୋହ । ଖାଲି ଉପରକୁ ଚାହିଁ ମୁଁ ଘର ଭିତରେ ଶୋଇଥାଏଁ । ଅନ୍ଧାର ଭବିଷ୍ୟତ ଲମ୍ବି ଯାଇଥାଏ ମନ ଆଗରେ ସମୁଦ୍ର ପରି । କୂଳ କିନାରା କିଛି ଦିଶୁନାହିଁ । ବାଉଳିଆ ଭାବନା ମନକୁ ଅସ୍ଥିର କରୁଥାଏ ।

ଦାଣ୍ଡ କବାଟ କିଏ ଖୁଡ଼ୁ ଖୁଡ଼ୁ କଲା । ଚମକି ଉଠିଲି । ବୋଉ ଯିବାର ଦଶ ପନ୍ଦର ମିନିଟ୍ ହୋଇନାହିଁ । କିଏ ଆସିଲା ? ସିଏ ହୋଇଥାଉ ଆଗ ନ ଦେଖିଲେ କବାଟ ଖୋଲିବି ନାହିଁ । ଦିନକର ଅସାବଧାନତା ପାଇଁ ଯେତେ କାଣ୍ଡ ଘଟିଯାଇଛି ମନରେ ସେସବୁ ଆଜି ବି ଜାଗି ରହିଛି ।

କବାଟ ପାଖକୁ ଯାଇ ଫାଙ୍କବାଟେ ପଦାକୁ ଚାହିଁଲି । ଦେଖିଲି, ଦାଣ୍ଡରେ ରଙ୍ଗିଆ ଠିଆ ହୋଇଛି । ରଙ୍ଗିଆ ବଂଶ ବାରବର୍ଷର ଉଣ୍ଡାରି ପିଲାଟିଏ । କବାଟ ଖୋଲିଲି । ଖଣ୍ଡେ ଚିଠି ଦେଇ କହିଲା, ନିଅ ।

ମୁଁ କବାଟ ବନ୍ଦ କଲି ।

ଘର ଭିତରକୁ ଆସି ଚିଠି ଖୋଲିଲି । ଶରତବାବୁଙ୍କ ସ୍ତ୍ରୀ ଲେଖିଛନ୍ତି । ଖଣ୍ଡିଏ ମୋ ପାଖକୁ, ଆଉଖଣ୍ଡି ବୋଉ ପାଖକୁ । ଖୁସି ଲାଗିଲା । ଯାହା ହେଉ, ମାଉସୀ ମୋ ଚିଠିଖଣ୍ଡି ଠିକ୍ସେ ପାଇଛନ୍ତି ।

ପଢ଼ିଲି । ବେଶି କରୁ ଲେଖା ନାହିଁ । ବୋଉ କାହାରୁ ଶୁଣି ସେ ବଡ଼ ବ୍ୟସ୍ତ ହୋଇଛନ୍ତି । କପରି ବୋଉର ସେବା କରିବାକୁ ହେବ ସେ ସମ୍ବନ୍ଧରେ ମୋତେ ଉପଦେଶ ଦେଇଛନ୍ତି । ଟିକିଏ ସୁବିଧା ହେଲେ ସେ ଥରେ ଆମ ଗାଁକୁ ଆମକୁ ଦେଖିବାକୁ ଆସିବେ ବୋଲି ଇଚ୍ଛା କରିଛନ୍ତି ।

ବୋଉ ପାଖକୁ ଯେଉଁ ଚିଠି ଖଣ୍ଡି ଲେଖା ହୋଇଛି ସେଇଟି ଟିକିଏ ବଡ଼ । ଅନେକ ବୁଝାଇ ସୁଝାଇ ଲେଖିଛନ୍ତି । କଅଣ ଲେଖିଥିଲେ ସବୁ ମୋର ମନେ ନାହିଁ । ଯେଉଁ କେତେ ଧାଡ଼ି ପଢ଼ି ମୋର ଗତରେ ଚମକ ଲାଗିଥିଲା ସେତକ ଆଜଯାଏ ଭୁଲି ପାରି ନାହିଁ ।

ସେ ଲେଖିଥିଲେ,—ମୋ ବଡ଼ପୁଅ ଦେବ ଖଷପୁରରେ ଗୀତାର ବାହାଘର କରିବାକୁ ମୁଁ ପ୍ରସ୍ତାବ ପକାନ୍ତି, ହେଲେ ସାହସ ହେଉନାହିଁ । କାଳେ ତମେ କଅଣ ଭାବିବ । ଦେବଟି ଭଲ ପିଲା । ପାଠଶାଠ ସିନା ହେଲା ନାହିଁ, ସ୍ୱଭାବ ଚରିତ୍ର ଭଲ । କଟକର ଗୋଟିଏ ମନୋହରୀ ଦୋକାନରେ ବନ୍ଦୀବସ୍ତ କରିବାକୁ ତା ବାପ ଦଶ ପନ୍ଦରହଜାର ହେବ ରଖାଇ ଦେଇଛନ୍ତି । କହତ ଲାଗି କାମ କଲେ ଭବିଷ୍ୟତରେ ଉନ୍ନତି ହେବ । ଗୀତାକୁ ଯଦି ମୁଁ ପାଅନ୍ତି, କୋଳରୁ ତାକୁ ତଳକୁ ଓହ୍ଲାଇ ଦିଅନ୍ତି ନାହିଁ । ତମର ଇଚ୍ଛା କଅଣ ମୋତେ ଲେଖି ଜଣାଇବ ।

ଚିଠିଖଣ୍ଡି ପଢ଼ି ଆମୋଦ ଅନୁଭବ କଲି । କହୁ କହୁ ମାଉସୀ କଟକରେ କଣ୍ଢ ପକାଇଥିଲେ, ତିନ ତିନଟା ବାଳୁଙ୍ଗା ପୁଅ ଜନ୍ମ କରିଛନ୍ତି । ବାଳୁଙ୍ଗା ! ଆଜି ବାହାଘର ପ୍ରସ୍ତାବ ପଡ଼ିବାରୁ ବାଳୁଙ୍ଗା ପିଲାଟିର ସ୍ୱଭାବ ଚରିତ୍ର ଭଲ ହୋଇଗଲା ! ହସ ମାଡ଼ିଲା । ତଥାପି ଆମ ଉପରେ ତାଙ୍କର ଦୟା ଅଳ୍ପ ନୁହେଁ । ଯାହା ମନକୁ ଆସୁ, ସେ ତ ଭାବୁଛନ୍ତି, ଭଲ ହେବ ।

ଭାବିଲି, କ୍ଷତି କଅଣ ? ମରଦପୁଅର ଭାଗ୍ୟ ପତର ତଳେ ଠାକୁରରେ କଲେ ସେଣ୍ଟି ଧନେ ସଂସାରରେ ବଡ଼ ହୋଇଉଠିବେ । ଭଲ ପାଇବାକୁ ଇଚ୍ଛା କଲେ ମଣିଷ ସମସ୍ତଙ୍କୁ ଭଲ ପାଇପାରେ । ତେବେ ତାହାହିଁ ହେଉ । ଅନ୍ତତଃ ବୋଉର ଦୁଃଖ ଚିନ୍ତା ଘୁଞ୍ଚିଯିବ । ମୋ ପାଇଁ ତାକୁ ଆଉ ଦହଗଞ୍ଜ ହେବାକୁ ପଡ଼ିବ ନାହିଁ । ମୋର ଭବିଷ୍ୟତ କଥା ଭାବି ରାତି ରାତି ଅନିଦ୍ରା ରହିବାକୁ ପଡ଼ିବ ନାହିଁ ।

ମୋତେ ବି କୌଣସି ବିଷୟରେ ଆଉ ଚିନ୍ତା କରିବାକୁ ପଡ଼ିବ ନାହିଁ । ମୋ ପାଇଁ ଭାବିବେ ଅନ୍ୟମାନେ । ଶରତବାବୁଙ୍କ ପରି ଶ୍ୱଶୁର ଆଉ ତାଙ୍କ ସ୍ତ୍ରୀଙ୍କ ପରି ଶାଶୁ ପାଇ ମୁଁ ନିଜକୁ ଭାଗ୍ୟବତୀ ମଣିବି । ସ୍ୱାମୀ ଅଧାପାଠୁଆ; କିନ୍ତୁ ସ୍ୱଭାବ ଚରିତ୍ର ତ ତାଙ୍କର ଭଲ ।

ବାଳୁଙ୍ଗା !

ଛି ! କେବଳ ଶାଶୁ ଶ୍ୱଶୁର, ନଣନ୍ଦ ଦିଅରଙ୍କୁ ନେଇ ରହିବାକୁ ଝିଅ ବାହା ହୁଏନାହିଁ । ଝିଅ ଗୃହେଁ ସ୍ୱାମୀ ।

ବିଧୁବାବୁଙ୍କ ପୁଅ ପ୍ରବୋଧବାବୁଙ୍କ ସମ୍ବନ୍ଧରେ କିଛି ଲେଖା ନାହିଁ । ବାପାଙ୍କର ଶେଷ ଇଚ୍ଛା ସେ ଶରତବାବୁଙ୍କୁ କିଛି ନଥିଲେ ପଗ ।

ଚିଠି ପଢ଼ିଲେ ବୋଉ ମିଛଟାରେ ଏଣୁ ତେଣୁ ଭାବିବ । କାଲେ ମାଉସୀଙ୍କ ପ୍ରସ୍ତାବରେ ହଁ ଭରିବ, ସେଥି ଡରରେ ମୁଁ ତା ଚିଠି ଖଣ୍ଡ ଚିକି ଚିକି କରି ଚିରି ଖତକୁଢ଼ ଗଦାରେ ପକାଇ ଦେଇ ଆସିଲି । ଭାଗ୍ୟରେ ଯାହା ଥିବ ତ ହେବ, ଜାଣି ଜାଣି ମଣିଷ ଅଜଣା ପାଣି ଭିତରକୁ ଡେଇଁବ କାହିଁକି ?

ମନରେ ଖିଆଲ ଆସିଲା, ସେମିତ ଯଦି ଖଣ୍ଡେ ଚିଠି ମୁଁ ପ୍ରବୋଧବାବୁଙ୍କ ପାଖକୁ ଲେଖେଁ ତ କ୍ଷତି କଅଣ ? ସେ ଶିକ୍ଷିତ, ସେ ବୁଦ୍ଧିମାନ୍, ନିଶ୍ଚୟ ଆମର ଦୁଃଖ ବୁଝିବେ । ଛି, କଅଣ ଭାବୁଛି ? କାଳେ ସେ ଆଉ କଅଣ ମନେ କରିବେ ? କାଳେ ଭାବିବେ, ଗାଁ ଝିଅ ହୋଇ ଏଡ଼େ ସାହସରେ ଯିଏ ଅପରିଚିତ ଲୋକ ପାଖକୁ ଚିଠି ଦେଇପାରେ ସେ କେବେ ଭଲ ଝିଅ ହୋଇ-ପାରେନା । ମିଛରେ ନାମ ପଡ଼ିବ ।

ବୋଉ ଫେରିଲା ।

ରାଧା ନନେ ଦୁଇ ଟଙ୍କା ଧାର ଦେଇ ମୋ ଦୁଲ୍ ଫେରାଇ ଦେଇଥିଲା । ବୋଉ କହିଲା, ଗୀତା ନେ, ରାଧା କହିଲା, ମୋ ପାଖେ ଦୁଇ ଟଙ୍କା ଅଛି ନିଅ, ଏବେ ଗରଜ ଚଳାଯାଉ; ପରେ ଦେଖାଯିବ ।

ଚିଠି ବିଷୟରେ ବୋଉକୁ କିଛି କହିଲି ନାହିଁ ।

**—ତେତିଶ—**

**ସ**ଞ୍ଜବେଳେ ଆମେ ତିନିହେଁ ମଦନ ନନାଙ୍କ ଘରକୁ ଗଲୁଁ । ଆମେ ପହଞ୍ଚିଲାବେଳକୁ ଗାଁ ମାଇପେ ତାଙ୍କ ଘରେ ରୁଣ୍ଡ ହୋଇ-ସାରିଥିଲେ । ବୋଉ **ଆଗ** ଦାମଭାଇଙ୍କ ପୁଅକୁ ଦୁଇ ଟଙ୍କା ଦେଇ ଦେଖିଲା । ସମସ୍ତେ ତା ଆଡ଼କୁ ଅନାଇଲେ । କିଏ ଜଣେ ଭୁନ ଭୁନ କରି ମୋ ପଛଆଡ଼େ କହିଲା, ନଈପାଣି ନଈକି ଯାଉ, ମୋ ଲୁଗାଟି ଶୁଖିଯାଉ ।

ଜଣେ ଦି ଜଣ ହସିଉଠିଲେ । କଥାର ଅର୍ଥ ମୁଁ ସହଜରେ ବୁଝିପାରିଲି ନାହିଁ । ପିଲାଏ ଯେତେବେଳେ ଗାଧୋଇସାରି ଓଦା

ଲୁଗାକୁ ମାଳ ମାଳ କରି ବାନ୍ଧି ଲୁଗା ଶୁଖାଇ ନଈରୁ ଫେରନ୍ତି, ମନ ଆନନ୍ଦରେ ଲୁଗା ହଲାଇ ଏଣ୍ଡି କଥା ସେମାନେ କହୁଥାନ୍ତି ।

ବୋଉ ତାର ସମବୟସ୍କୀମାନଙ୍କ ସଙ୍ଗରେ ଅନ୍ୟ ଘରକୁ ଚାଲିଗଲା । ମୁଁ ଦାମଭାଇଙ୍କ ସ୍ତ୍ରୀ ଥିବା ଘରେ ରହିଲି । ପିଲାଟିକୁ ଟଣାଟଣି କରି ଯିଏ ଇଚ୍ଛା ସିଏ ନେଉଥାନ୍ତି । କେତେ ଗେଲ କରୁଥାନ୍ତି । ମୁଁ ବସିଥାଏ ଚୁପ ହୋଇ । ପିଲାକୁ ଧରିବାକୁ ଆଗ୍ରହ ହେଉଥାଏ, କିନ୍ତୁ ବସ୍ତୁହନ ତଳର ଗୋଟିଏ ଘଟଣା ମନେ ପଡ଼ିଗଲେ ହାତ ଚଳେ ନାହିଁ ।

ମନେ ମନେ ଖୋଜୁଥାଏଁ ରେଣୁକୁ । ଏତେ ଝିଅ ବୋହୂ ଆସିଛନ୍ତି । ଉପରେ ପଡ଼ି କାହାରି ସଙ୍ଗେ କଥା କହିବାକୁ କିପରି ସଙ୍କୋଚ ଲାଗୁଥାଏ । କାଳେ କିଏ କଅଣ କହିବ ?

ଲେଖାରେ ଭାଉଜ ହେବ ଜଣେ, ମୋ ଓଠରେ ହାତ ଦେଇ ମୁହଁକୁ ହଠାତ୍ ଟେକିଦେଲେ । କହିଲେ, ଦେଖ ମ, ଚନ୍ଦ୍ରଉହିଆ ମୁହଁ, ସତେ କି ପୂନେଇ ଜହ୍ନ ଗୋ । ମୁଁ ଯାହା ମିଣିପି ହୋଇଥାନ୍ତି......

ହସି ହସି ମୁହଁ ନୋଇଁଲି । ତାଙ୍କ ପାଟିରୁ କଥା ଛଡ଼ାଇ ନେଇ ଆଉ ଜଣେ କହିଲେ, ମିଣିପି ହୋଇଥିଲେ କଅଣ କରିଥାନ୍ତୁ ବଉଳ ? ଚନ୍ଦ୍ରମୁହଁରେ କାଳି ବୋଳିଦିଅନ୍ତୁ ?

ଉତ୍ତର ପାଇଲେ, କାଳି ତ ଧୋଇଦେଲେ ଚାଲିଯିବ । ଚନ୍ଦ୍ରମୁହଁରେ ଠେକୁଆ ଦାଗ ଆଙ୍କି ଦିଅନ୍ତି, ଯେମିତି ଲିଭନ୍ତା ନାହିଁ । ଯିଏ ଦେଖନ୍ତା, କହନ୍ତା, ଦାଗିଟାଏ ।

କିଛି କହିଲି ନାହିଁ । ଭାବିଲି, ଯିଏ ଯାହା କହୁ, ହସିଦେଲେ ଚଳିବ । ମୁହଁ ଖୋଲିଲେ ସମସ୍ତେ ଘେରିଯାଇ କାଉ କାଉ କରି ଖାଇଯିବେ ।

ତୁମ ହୋଇ ରହିଲେ ବି କଷ୍ଟ ତ ମିଳନ୍ତି ନାହିଁ । କଏ ଜଣେ କହିଲା, ସେହି ମୁହଁ ଦେଖି ବାମାଠା ବନାକେତେ ପାଗଳ ହୋଇଥିଲା । ବେକରେ ଜୁଆଳି ପଡ଼ିଲେ ବି ବେଳେବେଳେ ଓଲେଇ ବଳଦ ପରି କଅଣ ମୁହଁ ନ ବଢ଼ାଉଛୁ ?

ସମସ୍ତେ ହସି ଉଠିଲେ ।

କଥାହ ଶିଶୁଟି ପରି ମୁଁ ଥରେ ସମସ୍ତଙ୍କ ମୁହଁକୁ ଚାହିଁଲି । ସମସ୍ତେ ଯେପରି କୌତୁହଳରେ ମୋଓର ଆଡ଼କୁ ଚାହିଁଛନ୍ତି । ଏକା ବାମଭାଇଙ୍କ ସ୍ତ୍ରୀ ଗମ୍ଭୀର ହୋଇ ତଳକୁ ଚାହିଁଛନ୍ତି, କଅଣ ଭାବୁଛନ୍ତି ।

ସହିବାର ସୀମା ପାର ହୋଇଆସିଛି । ଦୁର୍ନାମ ତ ଲୋକେ କରୁଛନ୍ତି, କରିବେ । ସେଥିକି ଡରି ମୁହଁ ବନ୍ଦ କରି ଅନ୍ୟମାନଙ୍କୁ ମଉଜ କରିବାକୁ ମୁଁ ସୁଯୋଗ ଦେବିନାହିଁ । ଯିଏ ଯାହା କହୁ, ଯିଏ ଯାହା ଭାବୁ, ଏଥର ମୁହେଁ ମୁହେଁ ଜବାବ ଦେବି ।

କିନ୍ତୁ ଆଉ କେହି କିଛି କହିଲେ ନାହିଁ ।

ବଡ଼ମା ଆସି ଖାଇବାକୁ ଡାକିଗଲେ ।

ଘରେ ଯେତେ ମାଇପେ ଥିଲେ ସମସ୍ତେ ଖିଦ୍‌ଖାଦ ହୋଇ ଉଠିଗଲେ ପଦାକୁ । ବାମଭାଇଙ୍କ ସ୍ତ୍ରୀ ପିଲାଟିକୁ କୋଳରେ ଧରି ବସିଥିଲେ । ମୁଁ ତାଙ୍କର ପାଖରେ ରହିଲି ।

ମୋତେ କହିଲେ, ତୁମେ ଗଲ ନାହିଁ ଯେ ? ଖାଇବ ନାହିଁ କି ?

ଉତ୍ତର ଦେଲି, ଯିବି ନୂଆବୋଉ, ତମରି ସାଙ୍ଗରେ ।

ତାଙ୍କର ଦୁର୍ବଳ ମୁହଁରେ ହସ ଖେଳିଗଲା । କହିଲେ, ମୋ ସାଙ୍ଗରେ କାହିଁକି ଯିବ ? ମୋତେ ଆଜି ଖାଇବାକୁ ମନା । ତୁମେ ଯାଅ ।

କହିଲି, ମୁଁ ପରେ ଖାଇବି । ନଚେଳାରେ ତୁମ ପାଖରେ ବସି ଦି ଚାରିପଦ କଥାଭାଷା ହେବାକୁ ରହିଲି । ଆମେ ଗରିବ ବୋଲି ତୁମେ ତ ଦିନେ କେବେ ପଚାର ନାହିଁ ।

ସେ କହିଉଠିଲେ, ମୋର ପଚାରିବାରେ କଅଣ ଥାଏ ଗୀତା ? ଯାହାଙ୍କର ପଚାରିବାର କଥା ସେ ତ ପଚାରୁଛନ୍ତି ।

କହିଲି, ଭଉଜବୋଉ, ଦାମଭାଇଙ୍କ କଥା କହୁଛ ? ସତରେ, ସେ ପିଲାଦିନୁ ମତେ ଭଲ ପାଆନ୍ତି । ଆଗେ ବେଳେବେଳେ ଯାଉଥିଲେ, ଆମର ଭଲମନ୍ଦ କଥା ବୁଝୁଥିଲେ । ତମେ ଆସି କି ମନ୍ତର କଲ ଯେ ଆଜିକାଲି ତାଙ୍କର ଗୋଡ଼ ଆମ ଦୁଆରେ ପଡ଼େ ନାହିଁ ।

କେଡ଼େ ନିଶ୍ଚିନ୍ତ ଭାବରେ କହିଦେଲି ସିନା, ତାଙ୍କ ମନରେ କି ଧାରଣା ହେଲା କେଜାଣି, ସେ ମୋ ମୁହଁକୁ ଚାହିଁଲେ । ଆଖିରେ ରାଗ ଓ ଘୃଣା ଫୁଟି ଉଠିଲା । ମୋ ଛାତିରେ ଚମକ ଲାଗିଲା । ହସ ମିଳାଇଗଲା ।

କହିଲେ, ମନ୍ତର ଯନ୍ତର ଆମକୁ କରିଆସେ ନାହିଁ ଗୋ ! ତୁମେ ସିନା ସେସବୁ ଜାଣ । ଭଲରେ ମନ୍ଦରେ ସବୁବେଳେ ଖାଲି ତୁମରି ନାମ ମୁଁ ତାଙ୍କ ତୁଣ୍ଡରେ ଶୁଣେ । କଥାକଥାକେ ତମରି ରୂପଗୁଣର ଉପଲକ୍ଷ୍ୟ ଦେଇ ମୋତେ ସେ କହନ୍ତି, ମୋ ଉପରେ ବିରକ୍ତ ହୁଅନ୍ତି, ଛିଗୁଲାଇ କହନ୍ତି । ମୁଁ କହିଲି, ଯଦି ଗୀତା ତୁମ ଆଖିରେ ଏଡ଼େ ସୁନ୍ଦର, ଏଡ଼େ ବଡ଼ ଦିଶେ, ତେବେ ପରଝିଅର ହାତ ଧରି ଘରକୁ ଆଣି ଦହଗଞ୍ଜ କରୁଛ କାହିଁକି ? ସେଇ ଗୀତାକୁ ବାହାହୋଇ ରହିଲ ନାହିଁ ?

ମୁଁ କହିଲି, ଭଉଜବୋଉ, ଦାମଭାଇ ମୋତେ ପ୍ରଶଂସା କରନ୍ତି, ସେଥିପାଇଁ ତୁମେ ଏତେ ବିରକ୍ତ ହୁଅ କାହିଁକି ? ଏଇକଥା

ଯବ ଆଗରୁ କହୁଥାନ୍ତ, ମୁଁ ତ ତାଙ୍କୁ ମୋଟେ କଥା କହନ୍ତିନାହିଁ । ତୁମର ଏଇ ଅଶାନ୍ତିର ଫଳ କଅଣ ହୋଇଛି, ଜାଣ ? ବାଣ୍ଡରେ ହାଟରେ ମୋ ନାମରେ ମିଛରେ ଦୁର୍ନାମ ରଟିଛି ।

କହିଲେ, ମିଛ ହେଉ, ସତ ହେଉ, ତୁମର ଦୁର୍ନାମ ଆସି ମୋ କାନରେ ବାଜିଲା । ଲୋକେ ବାରକଥା କହିଲେ । ଆଉ କାହାର ନାମରେ ହୋଇଥିଲେ ମୁଁ କାନ ଦେଇ ନ ଥାନ୍ତି । ସ୍ବାଙ୍କର ନାମରେ··· । ଗୀତା, ଏ ଗାଁରେ ଗୋଡ଼ ଦେଲାଦିନୁ ତମର ନାମରେ କେତେ ଦୁର୍ନାମ ଶୁଣିଛି, ମନେ ମନେ କେତେ ରାଗିଛି, ତୁମକୁ କେତେ ଘୃଣା କରିଛି ।

ଆଖିରେ ଲୁହ ଛଳ ଛଳ ହେଲା । କରୁଣ ସ୍ବରରେ ପଚାରିଲି, ଭାଉଜବୋଉ, ଲୋକଙ୍କ ତୁଣ୍ଡର କଥା ଶୁଣି ତମେ ସତ ମଣିଲ ?

ସେ ପୁଣି ହସିଲେ । କହିଲେ, କାହିଁକି ଉପରେ ପଡ଼ି ଖୋଳେଇ ଖୋଳେଇ କଥା କାଢ଼ୁଛ ? ଭଲେଇ ହୋଇ ନିଜକୁ ସତୀ ସାବିତ୍ରୀ ପ୍ରମାଣ କରିବାକୁ ? ନିଆଁ ନ ଥିଲେ ଲୋକେ ଧୂଆଁ ଦେଖନ୍ତେ କେଉଁଠୁ ? ତା ଛଡ଼ା, ଲୋକେ ବି ଆଖିରେ ଦେଖିଛନ୍ତି—

ଚମକି ଉଠିଲି । ଲୁହ ପୋଛି କହିଲି, ଆଖିରେ ଦେଖିଛନ୍ତି ? କଅଣ ଆଖିରେ ଦେଖିଛନ୍ତି ? କିଏ ଏଡ଼େ ସାହସରେ କହିଲା ? ଭାଉଜବୋଉ, ବିମଳାଭାଇର ସ୍ତ୍ରୀ ବିନା କାରଣରେ ମୋର ଶତ୍ରୁ । ସେହି ମୋର ଦୁର୍ନାମ ରଟାଇଛନ୍ତି । ଦୁନିଆରେ ସମସ୍ତେ ପଛେ ବିଶ୍ବାସ କରନ୍ତୁ, ତୁମେ କେବେ ବିଶ୍ବାସ କରନାହିଁ । ଶୁଣିବ ସେଦିନର ଘଟଣାଟି ?

କହିଲି ।

ସେ ମନଦେଇ ଶୁଣିଲେ । ପଚାରିଲେ, କିନ୍ତୁ ମୁଁ ତ ଆଉ କେତେ କଥା ଶୁଣିଥିଲି ।

କହିଲି, ଆଉ ଯାହା ଶୁଣିଥିଲି ସବୁ ମିଛ । ତମେ ଦାମଭାଇଙ୍କୁ ପଚାର । ସେ ଭଗବାନଙ୍କର ଶପଥ ଦେଇ କହନ୍ତୁ । ଗାଉଁକଟଣାଉଁ, ମୋ କଥାରେ ତମେ ବିଶ୍ୱାସ ନ କରିପାର, କିନ୍ତୁ······

କହିଲେ, କିନ୍ତୁ ତାଙ୍କ କଥାରେ ? ଏତେ ଅରୁଚି ଘରୁଚି କାହିଁକି ହେବ ? ଏତେ ଲୋକ ଥାଉଁଣୁ ତୁମେ ଆସି ମୋ ଆଗରେ ଉଚ୍ଛୁଳି ହେଉଛ । ମୁଁ ତ ତୁମକୁ କିଛି ପଚାରୁନାହିଁ । ବୁଝି-ପାରୁନା, ତୁମେ ଭଲ ହୁଅ, ଖରାପ ହୁଅ, ତୁମ ଭଲ ତୁମ ଖରାପ ତୁମଠି । ଯିଏ ମୋର ହାତଧରି ଆଣିଛନ୍ତି ସେ ଯଦି ତୁମ ଘରକୁ ନିତି ଦଉଡ଼ନ୍ତି, ତୁମେ ଯଦି ନିର୍ଲଜ୍ଜ ପରି ତାଙ୍କ ସଙ୍ଗେ ଧରାପରା ଥଟ୍ଟାତାମସା ଲଗାଅ, ନିଜକୁ ସାକ୍ଷୀ କରି ଯେତେ କହିଲେ ତମର ଭଲପଣିଆଁ କେହି ବିଶ୍ୱାସ କରିବେ ? ଥଟ୍ଟାତାମସା ଲଗାଇବାକୁ ଏ ଗାଁରେ କଅଣ ଆଉ କେହି ଅଭିଆଡ଼ା ଟୋକା ନାହାନ୍ତି ?

ଲାଜରେ ମୋର ମୁହଁ ଜଳିଗଲା । ଦୁଇ ହାତରେ ଆଖି ଘୋଡ଼ାଇ ଭାବିଲି, ଛି, ଯାହାର ହୃଦୟ ନାହିଁ, ଯିଏ ନିଜର ସ୍ୱାମୀଙ୍କୁ ବି ଅବିଶ୍ୱାସ କରନ୍ତି, ତାଙ୍କର ଜୀବନ ଚିରଦିନ ଅଶାନ୍ତିରେ କଟିବ । ଦୁନିଆରେ କାହାଠି ତାଙ୍କର ପତିଆରା ନାହିଁ । ଜୀବନର ସବୁ ଦୁଃଖ ମନର ସବୁ ଭାବନା ତାଙ୍କରି ଆଗରେ ହୃଦୟ ଖୋଲି କହିବି ଭାବିଥିଲି, କିଛି ଲୁଚାଇବି ନାହିଁ; କିନ୍ତୁ ମଣିଷର ଦୁଃଖ ବୁଝିବାପାଇଁ ଯାହାର ହୃଦୟ ନାହିଁ ସେପରି ପଥର ଆଗରେ ମନ ଖୋଲିବା ଦରକାର ନାହିଁ ।

ଏପରି କେତେ କଅଣ ଭାବିଲି । କିଏ ଜଣେ ପଛରୁ ଆସି ମୋର ଦୁଇ ଆଖି ବୁଜି ଧରିଲା । ଧୀରେ ଧୀରେ ତାଆରି ହାତ ଖୋଲିଲି । ଚିହ୍ନିଲି, ରେଣୁ ।

ଦାମଭାଇଙ୍କ ସ୍ତ୍ରୀ ମୋ ପାଖରେ ବସିଥିଲେ, କୁଆଡ଼େ ଉଠିଗଲେ ।

—ଚଉବିଶ—

**ରେ**ଣୁ ମୋତେ କୁଣ୍ଢାଇ ଧରି କହିଲା, ଗୀତାଅପା, ତୁ ଆସି ଏଠି ବସିଚୁ, ମୁଁ ତୋତେ ତିନି ଖଞ୍ଜା ଖୋଜି ଆସିଲିଣି । ଏଁ ତୋ ଆଖିରେ ଲୁହ ଯେ !

ତା ପାଟିରେ ହାତ ଦେଇ କହିଲି, ଚୁପ୍ ଚୁପ୍, ଲୁହ ନୁହେଁ, ପାଣି ।

ଆଖି ପୋଛିଲି । ସେ ଆଣ୍ଠେଇ ପଡ଼ି ଭୁନ ଭୁନ ପଚାରିଲା, କହ ଅପା, କାହିଁକି କାନ୍ଦୁଚୁ ? ଦାମଭାଇ ସ୍ତ୍ରୀ ତୋ ପାଖେ ବସିଥିଲେ, ସେ କଅଣ ତୋତେ କହିଲେ ?

ମୁଁ ତା ଓଠରେ ହାତ ଦେଇ ହସି ହସି କହିଲି, ନାଇଁ ଲୋ, କେହି ମୋତେ କିଛି କହିନାହାଁନ୍ତି । ମୋ ମୁଣ୍ଡ ବଥାଉଚି । ଜୀବନର କେତେ ଅକୁହା ଦୁଃଖ ପାଣି ହୋଇ ଆଖିରୁ ନିଗିଡ଼ି ପଡ଼ୁଚି ।

ମୋ କଥା ମୋ ତୁଣ୍ଡରେ ଅଛି ରେଣୁବୋଉ ଖୁଡ଼ୀ ଘର-ଭିତରିକୁ ମୁହଁ ଗଳାଇ କଠୋର କଣ୍ଠରେ ଡାକିଲେ, ରେଣୁ, ରେଣୁ—

ରେଣୁ ଉତ୍ତର ଦେଲା, କଅଣ ବୋଉ !

ସେ କହିଲେ, କଲେ, ଗୀତା କଅଣ ତୋର ସାଙ୍ଗ ସରିସା ? ଆସୁନୁ ଏଣେ ।

ରେଣୁ ଉଠିଗଲା ।

ମୁଁ କାବା ହୋଇ ଚାହିଁ ରହିଲି । ସେ ବାସୁଦାଦାଙ୍କ ସ୍ତ୍ରୀ । ଗାଁରେ ତାଙ୍କ ଭଲପଣର ଏତେ ପ୍ରଶଂସା । ପର ଆପଣା ଭେଦ ସେ ଜାଣନ୍ତି ନାହିଁ । ମୋତେ ସେ ଏତେ ଭଲ ପାଉଥିଲେ । ଆଜି ସେ ପର କଥାରେ ବିଶ୍ୱାସ କରୁଛନ୍ତି । ମୋତେ ଘୃଣାଚକ୍ଷୁରେ ଦେଖୁଛନ୍ତି । ସେଥିପାଇଁ ରେଣୁକୁ ମୋ ପାଖରୁ ଉଦ୍ଧାର ନେଉଛନ୍ତି । ଯେତେ ମୋ ଦେହର ପରଶ ଲାଗିଲେ ସେ ଅପବିତ୍ର ହେବ !

ଦାମଭାଇଙ୍କ ସ୍ତ୍ରୀ ପିଲାଟିକୁ କାହାକୁ ଦେଇ ପୁଣି ସେ ଘରକୁ ଆସିଲେ । ଘୃଣାମିଶା ଚାହାଣୀରେ ମୋ ମୁହଁକୁ ଚାହିଁ ଅଲଗୁଣୀ ଉପରୁ ଖଣ୍ଡେ ଲୁଗା ନେଇ ଚାଲିଗଲେ ।

ମୁଁ ଉଠି ଠିଆହେଲି । ବିମଳ ଭାଇଙ୍କ ସ୍ତ୍ରୀ ହଠାତ୍ ଯେ ଘରଭିତରକୁ ପଶିଆସିଲେ । ମୋତେ ଦେଖି ଉପରଠାଉରିଆ ଆଗ୍ରହରେ ମୋର ହାତ ଧରି କହିଲେ, କେତେବେଳେ ଆସିଲ ଗୀତା ? ମୁଁ ସେତେଣେ କାମରେ ଲାଗିଛି, ତୁମକୁ ଦେଖିପାରି ନାହିଁ । ତୁମ ବୋଉ—?

କହିଲି, ବଡ଼ମାଙ୍କ ସଙ୍ଗରେ ସେ ଯାଇଛି ।

ଗାଁ ମାଇପେ ଖିଆପିଆ ସାରି ପୁଣି ଆସି ସେ ଘରେ ରୁଣ୍ଡ ହୋଇଗଲେ । ସେମାନଙ୍କ ପାଟି ତୁଣ୍ଡ ହସକୌତୁକରେ ଯେତେ କି ଖଞ୍ଜା ଫାଟିପଡ଼ିବ । ବିମଳ ଭାଇଙ୍କ ସ୍ତ୍ରୀ ମୋ ହାତ ଛାଡ଼ି କୁଆଡ଼େ ଚାଲିଗଲେ ।

ବୋଉ ଆସି ମୋତେ ଡାକିଲା । ଅଖିଆ ଅପିଆ ଘରକୁ ଫେରିଲି ।

## —ପଇଁତିରିଶି—

ଧାନୁଆନ ଯେ କ କଷ୍ଟରେ ମୋର ବେଳ କଟିଲା, କଥାରେ କହିହେଉନାହିଁ । କୌଣସି କାମରେ ମନ ଲାଗେ ନାହିଁ । ହାତ ଚଳେ ନାହିଁ । ସବୁବେଳେ ଭାବେଁ, ବିନା ଦୋଷ, ବିନା କାରଣରେ ଗାଁ ଲୋକଙ୍କ ଆଖିରେ ମୁଁ କଳଙ୍କିନୀ ହୋଇଛି । ମୋର ବୋଝ ଯେପରି ଗାଁ ଲୋକଙ୍କ ମୁଣ୍ଡରେ ଲଦା ହୋଇ ବେଳୁବେଳ ବଳେଇ ପଡ଼ୁଛି ।

ଆମ ଘରକୁ ଆଉ କେହି ଆସନ୍ତି ନାହିଁ । ଏକା ରାଧାଟି ଆସେ । ତାଆର ଦୃଢ଼ ଧାରଣା ଯେ ମୋ ପରି ଝିଅ କେବେ ଖରାପ ହୋଇ-ପାରନ୍ତି ନାହିଁ । ଲୋକେ ଦେଖି ନ ପାରି ନିଃସହାୟ ବୋଲି ଦାଉକଥା କହୁଛନ୍ତି । ରାଧା ଆସେ । ନବେଳାରେ ଫୁସ୍ ଫୁସ୍ କରି ବୋଉ କାନରେ କଅଣ କହି ଫେରିଯାଏ । ବୋଉ ମୁହଁ ଶୁଖାଏ । ବେଳେବେଳେ କାନ୍ଦେ, ମୋତେ କିଛି କହେ ନାହିଁ ।

ଥରେ ଅଧେ ରାଧାର କଥା ମୁଁ କାନ ପାରି ଶୁଣିଛି । ଗାଁର କେଉଁ ଲୋକ ମୋ ନାମରେ କି ଦୁର୍ନାମ ରଟାନ୍ତି ସେହି କଥା ସେ କହେ । ବୁଝିପାରି ମୁଁ ବି ଆଉ ଶୁଣିବାକୁ ଚେଷ୍ଟା କରେଁ ନାହିଁ ।

ଦିନେ ତାଆର କଥା ଶୁଣି ବୋଉ କହିଲା, ଆଉ ହେବ ନାହିଁ ଲୋ, କେଉଁ ଆଣ୍ଠରେ କେତେ ଆଶା ମନରେ ଧରି ଏତେ ଦିନ କଟିଗଲା । ମଣିଷ ସବୁବେଳେ ଭଲ ଖୋଜେ । ଭଲ ମିଳିଲେ ଭାଗ୍ୟରେ ଯାହା ମିଳେ ତାକୁହିଁ ଆଦର କରେ । ଏଣିକି ଆଉ ରଖି ହେବ ନାହିଁ । ଗୀତା ବାପା ମରିବାର ବର୍ଷେ ପୂରିଲା । ଯେଉଁଠି ସମ୍ବନ୍ଧ ଆସିବ, ସେଇଠି ରାଜି ହୋଇଯିବି । ବୟସ

ବଳେଇଲଣି । ଆଉ ରଖିବା ଠିକ୍ ନୁହେଁ । ତା ଭାଗ୍ୟରେ ଯାହା ଥିବ ହେବ ।

ରାଧା କହିଲା, ଗାଁଲୋକେ ଶତ୍ରୁତା ଆରମ୍ଭ କଲେଣି । ଭଲ ଖରାପ ଯେଉଁଠି ସମ୍ବନ୍ଧ ପଡ଼ିବ ଏଣୁ ତେଣୁ ବାରକଥା କହି ଆଗରୁ ଭାଙ୍ଗିଦେବେ । ମୁଁ କହୁଛି, ଯାହା ଘରେ ମୁଠିଏ ଖାଇବାକୁ ଥିବ, ଖଣ୍ଡେ ପିନ୍ଧିବାକୁ ମିଳିପାରିବ, ସେମିତି ଘରୁ ସମ୍ବନ୍ଧ ଆସିଲେ ମଙ୍ଗିଯିବା ଭଲ । ମରାଦପୁଅର ରୂପ ଗୁଣ କ ବସୁ... ଧରାଯାଏ ନାହିଁ ।

ବୋଉ କହିଲା, ସେଇଆ କରିବ ନେଇ ।

ସେହି ପ୍ରସ୍ତାବ କରିବା ଛଡ଼ା ଅନ୍ୟ ଉପାୟ କିଛି ନ ଥିଲା । ମୁଁ ଭାବି ସ୍ଥିର କଲି, ଏ ବିଷୟରେ ମୋର ମୁଣ୍ଡ ଖରଚ କରିବା ଠିକ୍ ନୁହେଁ । ଭଲ ହେଉ ମନ୍ଦ ହେଉ, ସେମାନେ ଯାହା କରିବେ ତାହାହିଁ ତ ହେବ । ମୋର ମତାମତ କେହି କେବେ ପଚାରିବେ ନାହିଁ । ପଚାରିଲେ ବା ମୁଁ କହିବ କଅଣ ? ଏ ଗାଁରେ ଆଉ ଏକ ମୁହୂର୍ତ୍ତ ରହିବାକୁ ମୋର ଇଚ୍ଛା ନାହିଁ । ଭାଗ୍ୟରେ ଯେଉଁଠି ଥିବ, ସେହି କର୍ମଭୂମିକୁ ଆଦର କରିବା ଭଲ ।

ବାପେ ବୋଉକୁ କହିଲେ, ବନ୍ଧୁବାବୁ ତଳେ ବାପା ଧବଳେଶ୍ୱର ଦର୍ଶନ କରି ଯିବାକୁ ଲେଖିଥିଲେ । ଗଲେ ହୁଅନ୍ତା ନାହିଁ ବୋଉ, ମୁଁ ଧବଳେଶ୍ୱର ମହାଦେବଙ୍କୁ ଦେଖିନାହିଁ ।

ପ୍ରକାରାନ୍ତରେ ବନ୍ଧୁବାବୁଙ୍କ ଘର ପ୍ରସ୍ତାବ ତାର ମନେ ପକାଇଦେବା ମୋର ଉଦ୍ଦେଶ୍ୟ ଥିଲା । ମୋର ମୁଣ୍ଡରେ ହାତ ବୁଲାଇ ଦୁଃଖମିଶା ସ୍ୱରରେ ଓବୋଉ କହିଲା, ଯିଏ ନେଇଯିବାକୁ କହିଥିଲେ ସେ ତ ନାହାନ୍ତି, ଯାଇ ଆଉ ଲାଭ କଅଣ ? ଯାଉ ଆସୁ ପାଞ୍ଚ ଟଙ୍କା ଖରଚ ହେବ । କାହୁଁ ପାଇବା ?

ମୁଁ ଭୁଲ ରହିଲି । ମୋର ସବୁଗଭଙ୍ଗା ମୁହିଁକୁ ଚାହିଁ ଦୁଃଖରେ ସେ ସାନ୍ତ୍ୱନା ଦେଇ କହିଲେ, ଠାକୁରେ ଆଇଷ ଦେଇ-ଥିଲେ ସେତିକେ ଭଲ କଲେ, ଥରେ କାହିଁକି ଦଶଥର ଧବଳେଶ୍ୱର ଯିବୁ ମା, ସେଥିକି ଦୁଃଖ କରନା ।

ଆଶାର ପ୍ରଦୀପଟି ବୋଉର କେଉଁପଦ ସାନ୍ତ୍ୱନାବାଣୀରେ ଏକାଥରେ ନିଷ୍ପ୍ରଭ ହେଲା । ବୁଝିଲି, ଅସମ୍ଭବ ମଣି ତେଣିକି ହାତ ବଢ଼ାଇବାକୁ ତାର ସାହସ ପାଉନାହିଁ । ଭାବିଲି, କାହାରିକୁ କିଛି ନ କହି ଅପରିଚିତ ପ୍ରବୋଧବାବୁଙ୍କ ପାଖକୁ ଖଣ୍ଡେ ଚିଠି ଲେଖିବି । ହୁଏ ତ ସେ ଆଶ୍ଚର୍ଯ୍ୟ ମଣିବେ । ମୋର ଚିଠି ଖଣ୍ଡିକ ତାଙ୍କର ବନ୍ଧୁମାନଙ୍କୁ ଦେଖାଇ ପଛରେ କେତେ ଦୁର୍ନାମ କରିବେ । କରନ୍ତୁ, ମୁଁ ତ ଶୁଣିବି ନାହିଁ, ଜାଣିବି ନାହିଁ । ଦୁର୍ନାମର କେଉଁ ଅଭାବ ଅଛି ? କେଜାଣି ତାଙ୍କର ମନ ତରଳିବ । ବାପାଙ୍କର ଶେଷ ଆଶା ଜାଣି ସେ କଅଣ ପ୍ରତିକାର କରିବେ । ଫଳାଫଳ ଯାହା ହେଉ, ଚିଠି ଖଣ୍ଡେ ଲେଖିଦେଲେ ଅନ୍ତତଃ ମୋର ମନରେ ଟିକିଏ ଶାନ୍ତି ଆସିବ । ଜୀବନଟା ଅନୁତାପ କରି କଟିବ ନାହିଁ । ତେଣିକି ସବୁ ଦୁଃଖ ସୁଖ ଭାଗ୍ୟ ଉପରେ ଲଦି ନିଶ୍ଚିନ୍ତ ରହିପାରିବି ।

କାଗଜ କଲମ ଧରି ଚିଠି ଲେଖି ବସିଲି । କିପରି ଆରମ୍ଭ କରିବି, କଅଣ ଲେଖିବି କିଛି ସ୍ଥିର କରି ପାରିଲି ନାହିଁ । ଧାଡ଼ିଏ ଲେଖେଁ, କେତେଥର ପଢ଼େଁ । ମନକୁ ଆସେ ନାହିଁ । ଲାଜ ମାଡ଼େ । ଭୟ ହୁଏ । କାଟିଦିଏଁ । ଶେଷକୁ ଚିଠି ଲେଖା ହୋଇପାରିଲା ନାହିଁ । କାଗଜ କଲମ ରଖିଦେଇ ଉଠି ଆସିଲି ବାରିଆଡ଼କୁ ।

ଏକୁଟିଆ ଠିଆ ହୋଇ ବଉଳମୂଳେ ନଈ ସେପାର ଗଛ ଗହଳକୁ ଚାହିଁ ରହିଲି । ଭଲମନ୍ଦ କେତେ ଗତ ଘଟଣା ମନକୁ

ଆସିଲି । ଦାମଭାଇଙ୍କ କଥା ମୋର ମନେ ପଡ଼ିଲା । ଦାମଭାଇ ଅନ୍ୟର ହାତ ଧରି ମଧ୍ୟ ଆଜି ଅଶାନ୍ତିରେ କାଳ କାଟୁଛନ୍ତି । ସ୍ତ୍ରୀଙ୍କୁ ସେ ଭଲ ପାଆନ୍ତି ନାହିଁ । ସ୍ତ୍ରୀଙ୍କ ଉପରେ ତାଙ୍କର ବିଶ୍ୱାସ ନାହିଁ । ସବୁବେଳେ ମୋର କଥା କହି ତାଙ୍କର ମନରେ କଷ୍ଟ ଦିଅନ୍ତି । ତାଙ୍କର ସ୍ତ୍ରୀ ମଧ୍ୟ ତାଙ୍କ ଉପରେ ବିଶ୍ୱାସ କରନ୍ତି ନାହିଁ । ମୋତେ ସନ୍ଦେହ କରନ୍ତି ।

ଦି ପହରେ ବୋଉକୁ ପଚାରିଲି, ଦାମଭାଇଙ୍କର ଆଜିକାଲି ଦେଖା ଦର୍ଶନ ନାହିଁ କାହିଁକି ? ନୂଆ ପୁଅ ଦେଖି ଭୁଲିଗଲେ କି ?

ବୋଉର ମୁହଁଟି ଦୁଃଖରେ ଝାଉଁଳି ପଡ଼ିଲା । ସେ ମୋ ମୁହଁକୁ ଏପରି ଭାବରେ ଚାହିଁଲା, କେଜାଣି କାହିଁକି ଆପେ ନଇଁଗଲା ମୋର ଦୃଷ୍ଟି । ଅସନ୍ତୁଷ୍ଟ ହୋଇ କହିଲା, ନିଜ ଦୁଃଖକୁ ହାରିଗୁହାରି ନାହିଁ, କାହାର ଗଲା ଆଇଲାରୁ ତତେ କଅଣ ମିଳିବ ?

ଆଉ କିଛି କହିବାକୁ ସାହସ ହେଲାନାହିଁ । ମୋର ଧାରଣା ହେଲା, ବୋଉ ମନର କେଉଁ ଅନ୍ଧାରି କୋଣରେ ସନ୍ଦେହର ତୋଫାନ ଉଠିଛି । ରାଗ ହେଲା । ଆଗରୁ ଉଠିଆସିଲି । ମୋର ପୁରୁଣା ଗପ ବହି ଉପରେ ମୁହଁ ବୁଲାଇ ପଢ଼ିବା ବାହାନାରେ କାନ୍ଦି କାନ୍ଦି ତାଆରି ପୁରୁଣା ପୃଷ୍ଠା ଉପରେ ଦୁଃଖ ଢାଳିଦେଲି ।

—ଛତିଶି—

ଦୁଃଖ ନୈରାଶ୍ୟରେ ବେଳ ଗଡ଼ି ଚାଲିଲା ।

ଚଇତ ମାସର ଅଧାଅଧି । ଅଭାବରେ ପଡ଼ି ଆମରି ଆଉ ଇଏ ଲ । ଚୁଲି ଜଳିଲା ନାହିଁ । ଘରେ ଯାହା ଥିଲା ପେଟ

ପୋଷିବାକୁ ବଳାଭଙ୍ଗା କଳ-ପ୍ରାୟ ସବୁ ଶେଷ ହେଲଣି । କେତେକାଳର ପୁରୁଣା ଖଟଟି ଓ ମୋର ସେହି ଦୁଲ୍‌ହଳକ ଖାଲି ଆଖିରେ ଦିଶୁଥାଏ । ଏତକ ସରିଲେ ତେଣିକି ଆଉ କପର ଚଳିବୁ ଭାବିପାରୁନାହିଁ । ତିନି ଓଳି ଉପାସରେ ଯେବେ ଯାହା ମୁଠିଏ ମିଳିଲା ସେ କେବଳ ବୁଧାର ଦୟାରୁ । ସେଇ ସେଇ କରି କେତେ ଗୃହସ୍ଥ ଧାରି ହେଲଣି । କେବେ ସୁଝା ହେବ, କପରି ସୁଝା ହେବ ଏ କଥା ଭାବିବା ଆଗରୁ ଆଗ ମନରେ ପଶେ କାଲି ପୁଣି ଚଳିବୁ କପରି ?

ତିନି ଓଳିରେ ସେଦିନ ମୁଠିଏ ଖାଇବାକୁ ମିଳିଥିଲା । ଅବଶ ହୋଇ ମା ଝିଅ ଦୁହେଁ ଦିପହରେ ଘରେ ଶୋଇଲୁ । ବୋଉ କହିଲା, ଗୀତା, ଦେଖିଲୁ ଘରର ଅବସ୍ଥା । ଆଉ ବରଷ ଛୁଆଣି ହୋଇପାରିଲା ନାହିଁ । ଖୁଞ୍ଚା ଦେଇ କୌଣସିମତେ ରକ୍ଷାରକ୍ଷଣ ହେଲା । ଏ ବର୍ଷ ଛୁଆଣି ନ କଲେ ଚଳିବ ନାହିଁ । ମାଙ୍କଡ଼ ଚଢ଼ଇଁ ସବୁ ଖସିଗଲାଣି । ନଈକୂଳିଆ ପବନରେ ସେ ସବୁ ଉଲୁରି ପଡ଼ିଲାଣି । ବର୍ଷାଦିନ ଆସୁଛି । ଘର ଖଣ୍ଡି ଛୁଆଣି ନ କଲେ ମୁଣ୍ଡ ଗୁଞ୍ଜିବା କେଉଁଠି ?

ଦୁଃଖ ଦୁର୍ଦ୍ଦଶାର ମଝିରେ ପଡ଼ିଲେ ଚାରିଆଡ଼ ଅନ୍ଧାର ଦିଶେ । ବୋଉକୁ କି ବୁଦ୍ଧି ଦେବି କିଛି ବୁଝିପାରିଲି ନାହିଁ । ପଚାରିଲି, କଅଣ କରିବା ବୋଉ ?

ସେ କହିବାକୁ ଲାଗିଲା, ଜମିଦାରଙ୍କର ତିନି ବର୍ଷର ଖଜଣା ବାକି । କେତେଥର ଲୋକ ଆସି ଫେରିଲାଣି । ଆମର ଦୁଃଖ ସୁଖ ତ ସେ ଦେଖିବେ ନାହିଁ ! ତାଙ୍କର ଖଜଣା ଗଣ୍ଡାକ ନ ଦେଲେ କେଉଁଦିନ ଆସି ଘରେ ପିଆଦା ପଶି କବାଟ ନଉକାଠ ଚାଢ଼ିବେ ।

କହିଲି, ବୋଉ, ମୋର ଦୁଲ୍‌ହଳକ ବିକି ଜମିଦାରଙ୍କ ଖଜଣା ଦେଇ ଦେ, ଘର ପଛେ ଛୁଆଣି ନ ହେଉ ।

ଏତେ ଦୁଃଖରେ ସୁଦ୍ଧା ସେ ହସିଲା । କହିଲା, ସେତିକ ତୋର ସମ୍ବଳ । ସେତିକ ବିକଲେ ସବୁ ହୋଇଯିବ, ନା ? ପାଗଳ ! ମୁଁ ଗୋଟାଏ କଥା ଭାବି ଠିକ୍ କରିଛି । ଆମର ଚଳ-ବାକିଖଣ୍ଡି ବନ୍ଧା ଦେବା, ନୋହିଲେ ବିକିଦେବା । ବାରିଟା ଖାଲି ପଡ଼ିଛି । କେଉଁ କାମକୁ ଆସୁନାହିଁ । କିଛି ଟଙ୍କା ମିଳିଗଲେ ଦିନା-କେତେ ଚଳିଯିବ ।

ବାଧା ଦେଇ ପଚାରିଲି, ଏ ବର୍ଷଟା ସିନା ଚଳିବାର ବନ୍ଦି କରି ସବୁ ହେବ, ଆର ବର୍ଷ, ତହିଁ ଆର ବର୍ଷ ?

ଅନ୍ୟମନସ୍କ ହେଲି ପରି ବୋଉ କଅଣ ଭାବିବାକୁ ଲାଗିଲା । କହିଲା, ଆଗକଥା ଭାବିବା ନାହିଁ, ଗୀତା । ଏତେ ଆଗକୁ ଭାବିଲେ ଚଳିବ ନାହିଁ । ଭଗବାନ କଅଣ ସବୁଦିନେ ଆମକୁ ଏପରି ରଖିଥିବେ ?

ଉତ୍ତର ଦେଲି ନାହିଁ ।

## —ସତର—

ରାଧାର ଚେଷ୍ଟାରେ ନଟବର ଦାଦା ଆମର ଚଳବାରି କିଣିବାକୁ ମଙ୍ଗିଲେ । ଛଅଗୁଣ୍ଠ ଜମି । ଠିକ୍ ହେଲା, ତିନଶ ଟଙ୍କା ଦେବେ । ତା ଛଡ଼ା ରେଜିଷ୍ଟ୍ରି କରିବାକୁ ଓ କଟକ ଯିବା-ଆସିବାକୁ ଯାହା ଖରଚ ହେବ ସେ ଦେବେ ।

କଟକ ଯିବାର ଦିନ ସ୍ଥିର ହେଲା । ଘୋଡ଼ା ଗାଡ଼ିରେ ଆମେ ଦିହେଁ ରାଧାକୁ ସଙ୍ଗରେ ନେଇ କଟକ ଆସିଲୁଁ । ନଟବର ଦାଦା ମଧ୍ୟ ଆସିଲେ ।

କଟକରେ ପହଞ୍ଚି ଦିନ ଅଧଯାଏ ସବ୍‌ରେଜଷ୍ଟ୍ରି ଖାନା ପାଖରେ ଅପେକ୍ଷା କରି ରହିଲୁଁ । କାମ ସରିଲେ ଆମେ ସେହି ଗାଡ଼ିରେ ଘରକୁ ଫେରିବୁଁ ।

ଡେରି ହେବାର ଦେଖି ବୋଉ କହିଲ, ରାତିଟା ଶରତ୍‌-ବାବୁଙ୍କ ବସାରେ ରହିଲେ ଭଲ ହେବ ।

ମୁଁ ନାହିଁ କଲି । ସେଠିକି ଗଲେ ପୁଣି ତାଙ୍କର ସ୍ତ୍ରୀ ତାଙ୍କ ପୁଅ ସମ୍ବନ୍ଧରେ ମୋର ବାହାଘର ପ୍ରସ୍ତାବ ପକାଇବେ । ଶହେ କଥା କହିବେ । ମୁଁ ସେହି ଡରରେ ବାଧା ଦେଲି ।

ମନେ ମନେ ଅମୁଭାଇଙ୍କୁ ଖୋଜୁଥାଏଁ । ତାଙ୍କର ଦେଖା ଦର୍ଶନ ନାହିଁ । ସେ କେଉଁଠି ଅଛନ୍ତି କେହି ଜାଣନ୍ତି ନାହିଁ । ରାଧାକୁ କହିଲି, ଧବଳେଶ୍ୱର ପରା କଟକକୁ ପାଖ, ଥରେ ଗଲେ ଭଲ ହୁଅନ୍ତା ନାହିଁ ?

ସେ କହିଲା, ଆଜି ଆଉ ବେଳ ପାଇବ ନାହିଁ । ରାତିଟା ଯଦି କେଉଁଠି ରହନ୍ତେ କାଲି ସକାଳୁ ଯାଇ ଦର୍ଶନ କରି ସଞ୍ଜସରିକି ଫେରି ଗାଁରେ ପହଞ୍ଚନ୍ତେ । ରାତ୍ରା ପରିଚୟ ଲୋକ ନ ଥିଲେ ମାଇପିଙ୍କ ପାଇଁ କଟକରେ ରହିବାକୁ ଥାନ ନାହିଁ ।

ବୋଉ ସବୁ ଶୁଣିଲା, କିଛି କହିଲା ନାହିଁ ।

ସବ୍‌ରେଜଷ୍ଟ୍ରି ଖାନାରେ କାମ ସରୁ ସରୁ ପ୍ରାୟ ଗୁରିଟା ବାଜିଲା । ନଟବର ଦାଦା କହିଲେ, ଭାଉଜବୋଉ, ତମେ ସବୁ ଫେରିଯାଅ । ମୁଁ କ୍ଲାନ୍ତ ହୋଇ ପଡ଼ିଛି । ଗାଡ଼ିରେ ଥାନ ହେବ ନାହିଁ । ଗ୍ଲଲ ଗ୍ଲଲ ଯିବାକୁ ମୋର ବଳ ପାଉନାହିଁ । ମୁଁ ଆଜି କେଉଁଠି ରହିଯିବି । କାଲି ସକାଳୁ ଯିବି ।

ବୋଉ କହିଲା, ନଟବର, ଗୀତାକୁ କଷ୍ଟ ହେଲାଣି । ଦିନ-ଯାକ ଉପାସ । କଟକରେ ରାତିଟିଏ ରହିବାକୁ କେଉଁଠି ଥାନ ମିଳିବ ନାହିଁ ?

ନଟେଇଦାଦା କହିଲେ, ଥାନ ନାହିଁ କାହିଁକ, ତେବେ ବଢ଼ିଲ ଝିଅକୁ ନେଇ କଟକରେ କେଉଁଠି ରହିବ ? ମୋ ବିବେଚନାରେ ଏହା ଭଲ ହେବ ନାହିଁ । ଘରକୁ ଫେରିଯିବା ଉଚିତ । ଗାଁରେ ବାରଲୋକ ବାରକଥା କହିବେ । ଲୋକଙ୍କ ତୁଣ୍ଡରେ କେହି ହାତ ଦେଇ ପାରିବେ ନାହିଁ । ପରର ଦୁର୍ନାମ ରଟାଇବାକୁ କେତେ ଅଲକ୍ଷଣ ଲୋକଙ୍କର ପାଟି ଖଲଖଲ ହେଉଥାଏ । କାହିଁକି ଏ ପ୍ରମାଦ ? ହାତେ ମାପି ଗୃହଖଣ୍ଡିକରେ ରହିଲେ ଶତ୍ରୁ ବି ମୁହଁ ଖୋଲିପାରିବ ନାହିଁ । ତୁମେ ସିଧାସିଧି ଗ୍ରାମକୁ ଫେରିଯାଅ ।

## —ଅଠତିରିଶ—

ନଟେଇଦାଦା ବିଦାୟ ନେଇଗଲେ । ଆମେସବୁ ନଈକୂଳକୁ ଫେରିଲୁଁ । ମୋର ମନର କେତେ ଆଶା କେତେ ସପନ ଭାଙ୍ଗି ଚୂନା ହୋଇଗଲା ।

ଭାଗ୍ୟରେ ଯାହା ଥାଏ ତାହା ଯଦି ହୁଏ, ବୃଥାରେ ମଣିଷ ନିଜେ ତା ଜୀବନରେ ଏତେ ଅଶାନ୍ତି ଆଣେ କାହିଁକି ? ଆଶା ଅଭିଳାଷର ଭଙ୍ଗାଗଢ଼ାର ଉତ୍ତେଜନାରେ ମଣିଷ ଛଟପଟ ହୁଏ କାହିଁକି ? କାହିଁକି ତା ମନରେ ଆଶାର ଆଲୁଅ ଉଠେ, ଜଳୁ ଜଳୁ ନିଷ୍ପ୍ରଭ ହୁଏ, ଲିଭିଆସେ, ଲିଭୁ ଲିଭୁ ତେଜ ହୋଇ ଉଠେ ପୁଣି ଅଗ୍ନିକ ଅସୀମ ଅନ୍ଧାରରେ ଲୀନ ହେବାକୁ । ମନରେ ଗୁହାଯାଏ ସ୍ମୃତିର ପୋଡ଼ା ପାଉଁଶ, ଯାହାକୁ ଦେଖି ଆତ୍ମା ବାତୁଳ ଉଠେ । ସେହି ବାତୁଳାର ଅଶାନ୍ତି ଭିତରେ ଟିକିଏ ଅକୁହା ଛପିଲା ଆନନ୍ଦ ସେ ପାଏ ପରା !

ଦେଖାଗଡ଼ା ଘାଟ । ମୁହୂର୍ତ୍ତିକ ପରେ ଗାଡ଼ି ନଈ ଭିତରକୁ ଗଡ଼ିଥାନ୍ତା । କେତେ ଆଶାଉନ୍ମାଦନାକୁ ମନରେ ସମାଧି ଦେଇ ଗାଁକୁ ମୁଁ ଫେରିଯାଇଥାନ୍ତି । ଯାହା ଘଟିଥାନ୍ତା ବରଣ କରି ନେଇଥାନ୍ତି ବିନା ଆପତ୍ତିରେ । କିନ୍ତୁ ଭାଗ୍ୟର ଉପହାସ, ଅଦେଖା ହାତର ନିର୍ଦ୍ଦେଶ ଏଡ଼ିଦେଇ ଚାଲିଯାଇ ହେଲାନାହିଁ ।

ଦେଖାଗଡ଼ା ଘାଟ । ସେଇଠି ଦେଖାହେଲା ଅମରଭାଇଙ୍କ ସଙ୍ଗରେ । କାହାକୁ ଅପେକ୍ଷା କରି ରାସ୍ତା ଉପରେ ସେ ଠିଆ-ହୋଇଥିଲେ । ଯାହାକୁ ସେ ଚାହାନ୍ତି । ଯାହା ମଧ୍ୟ ତାଙ୍କୁ ଚାହେଁ ।

ଅମରଭାଇ ଗାଡ଼ି ପାଖକୁ ଆସି ବୋଉକୁ ପ୍ରଣାମ କଲେ । ଆମେ କାହିଁକି କଟକ ଆସିଥିଲୁଁ ବୋଉ ତାଙ୍କୁ ଅଳ୍ପ କଥାରେ ବୁଝାଇ କହିଲା । ଆମେ ଯେ ବାଧ୍ୟ ହୋଇ ସେଦିନ ଗାଁକୁ ଫେରି ଯାଉଛୁଁ ଏ କଥା ଶୁଣି ଅମରଭାଇ କହିଲେ, ଆଜି ରାତିରେ ଆମରି ବସାରେ ରହିଯାଅ, ପାହାନ୍ତାରୁ ଉଠି ଥଣ୍ଡାଏ ଥଣ୍ଡାଏ ଗ୍ରାମକୁ ଫେରିଗଲେ ଯେ ବାଧା ହେବ ନାହିଁ । ରାତିବେଳା କ୍ଲାନ୍ତ ଦେହରେ ଫେରିଯିବା ଉଚିତ ନୁହେଁ ।

ବୋଧୀ କହିଲା, କାଲି ସକାଳୁ ଧବଳେଶ୍ୱର ଯାଇ ଗାଁକୁ ଫେରିଲେ ଭଲ ହେବ । ତମ ବସାରେ ମାଇପିଲୋକ ଅଛନ୍ତି ?

ସେ କହିଲେ, ମାଇପିଲୋକ କେହି ନାହାନ୍ତି । ଆମେ ତିନିଜଣ ମେସ୍ କରି ରହିଛୁଁ । ଜଣକର ଦେହ ଖରାପ ବୋଲି ତିନିଦିନ ହେଲା ସେ ତାଙ୍କ ଗ୍ରାମକୁ ଯାଇଛି । ବାକି ଜଣକ ବୁଢ଼ା, ଅତି ଭଲ ଲୋକ । ଆମର ମୁହରୀ ପରିକା । ବସାରେ ଥିଲେ କିଛି ଆପତ୍ତି ନାହିଁ । ତୁମମାନଙ୍କୁ ଦେଖିଲେ ସେ ନିଜେ ଆଉଡ଼ିଇ ହୋଇ ରହିବେ ।

ବୋଉ ପଚାରିଲା, ତମ ବସା ଏଠିକି କେତେ ଦୂର ?

ଅମୁଭାଇ କହିଲେ, ବେଶି ଦୂର ନୁହେଁ । ରଘୁନାଥଜୀ ମନ୍ଦିର ପାଖେ, ବିଧୁବାବୁ ମାଷ୍ଟରଙ୍କ ଘର ଆଗରେ ।

ମୋର ଛାତିରୁ ନିଆଁ ଖସିପଡ଼ିଲା । ବିଧୁବାବୁ ମାଷ୍ଟର ! ପୁଣି କାହିଁକି ସେ ନାମଟା ମୋ କାନରେ ପଡ଼ିଲା ? ମୋର ଶୋଇଲା ଆଶା ଚେଇଁଉଠିଲା ପରକ୍ଷଣରେ ମୁଣ୍ଡ ନୁଆଁଇବାକୁ । ବୋଉର ଉତ୍ତରକୁ କାନ ଡେରି ରହିଲି ।

ବୋଉ କହିଲା, ବିଧୁବାବୁ ମାଷ୍ଟର ! ତୁମେ ତାଙ୍କୁ ଚିହ୍ନ ଅମୁ ?

ଅମରଭାଇ କହିଲେ, ଚିହ୍ନେ । ବିଶେଷ ଆଳାପ ନାହିଁ । ସେ ବେଶି ବେଳ ଘରେ ରହନ୍ତି ନାହିଁ । ସବୁବେଳେ କାମରେ ବ୍ୟସ୍ତ । ତାଙ୍କ ପୁଅ ପ୍ରବୋଧବାବୁ ସଙ୍ଗେ ମୋର ଭଲ ଚିହ୍ନା-ପରିଚୟ ଅଛି । ସେ ଅତି ଭଲ ପିଲା । ଯେପରି ସୁନ୍ଦର, ସେପରି ମିଳାପୀ । ଧୀରସ୍ଥିର, ବିଚକ୍ଷଣ । ଆମେ ଗରିବ । ସେ କାହିଁ କେତେ ଉପରେ । ଲାଟସାହେବଙ୍କ ଅଫିସରେ ବଡ଼ କାମ କରନ୍ତି । ବିଦ୍ୱାନ୍ । ତଥାପି, ସେ ଆମ ବସାକୁ ଆସନ୍ତି, ଆମ ସଙ୍ଗେ ମିଶନ୍ତି, କଥାଭାଷା ହୁଅନ୍ତି । ବଡ଼ଲୋକୀ ଠିକଏ ନାହିଁ । ଆମର ସଙ୍ଗୀ ପରି ବ୍ୟବହାର କରନ୍ତି । ଆମର ସଙ୍କୋଚପଣ ସେ ରଖାଇ ଦିଅନ୍ତି ନାହିଁ ।

ବୋଉ ଆଗ୍ରହରେ କହିଲା, ବଡ଼ ଲୋକ ?

ଅମୁଭାଇ କହିଲେ, ବଳେ ବୁଝିବ ସେ କିପରି ଲୋକ । ଘଡ଼ିକରେ ପରକୁ ଆପଣାର କରିନିଅନ୍ତି । ଆମେ ଗରିବ, କିନ୍ତୁ ଦେଖାହେଲେ କେତେ କଥା କହନ୍ତି । ସୁଖଦୁଃଖ ପଚାରନ୍ତି । ଶୁଣିବ, ପନ୍ଦର କୋଡ଼ିଏ ଦିନ ତଳେ ମୋତେ ଜର ହୋଇଥିଲା । ବୁଢ଼ୀ କିପରି ଶୁଣିପାରି ନିଜେ ଆସି ହାଜର । କେତେ କଥା

ପଚ୍ଛରିଲେ । ପୂଛାଗ୍ନ ନ ଥାଏ ବୋଲି ନିଜ ହାତରେ ବାଲି ତିଆରି କରି ତାଙ୍କ ଘରୁ ମୋ ପାଇଁ ପ୍ରବୋଧବାବୁଙ୍କ ହାତରେ ପଠାଇଦେଲେ । ତୁମକୁ ସବୁ ଦେଖିଲେ ସେ ବଳେ ଧାଇଁ ଆସିବେ ଯେ, ଦେଖିବ ।

ବୋଉ କଅଣ ଭାବି କହିଲା, ହଉ ତେବେ ଅମୂ, ଆଜି ରାତିକ ଆମେ ତୁମ ଘରେ କୁଣିଆଁ ହେବୁଁ । କାଲି ସକାଳେ ଏକା ଆମକୁ ତୁମେ ଧବଳେଶ୍ୱର ନେଇ ଦିଅଁ ଦର୍ଶନ କରାଇ ଆଣିବ । ଗୀତା ଚାରି ମାସ ହେଲା ମୋ ସଙ୍ଗେ ଲଗାଇଛି, ଧବଳେଶ୍ୱର ଦେଖିବ । କଟକ ଆସିବାକୁ ଆଉ କେତେବ ସୁଯୋଗ ମିଳିବ କି ନାହିଁ କିଏ ଜାଣେ ? ଝିଅଟାର ଆଗ୍ରହ ଭାଙ୍ଗିବି କାହିଁକି ?

ଗାଡ଼ି ଫେରନ୍ତି ଚାଲିଲା ।

ବାଟରେ ଅମୂଭାଇ କହିଲେ, ପରଘରେ ମୁଣ୍ଡ ଖଟକଲେ ମଣିଷ ଆଉ ନିଜର ହୋଇ ରହିପାରେ ନାହିଁ । କାଶୀବାବୁ ଓକିଲଙ୍କ ସିରସ୍ତାରେ ମୋହରିର କାମ କରୁଛି । ଚଳିବା ମାନିଆଁ ରୋଜଗାର ହେଉଛି । ଓକିଲଙ୍କଠାରୁ ଛୁଟି ନ ନେଲେ ଧବଳେଶ୍ୱର ଯାଇପାରିବ ନାହିଁ । ତାଙ୍କୁ କହିବ । ଦେଖାଯାଉ, କଅଣ ହେଉଛି ।

ରାଧା କହିଲା, ଦେଖାଯାଉ କହିଲେ ଚଳିବ ନାହିଁ, ଅମୂବାବୁ । ତୁମର ଭରସାରେ ଆସିଛୁଁ । ଆମ ପାଇଁ ଦିନଟିଏ କଷ୍ଟ କରିବାକୁ ହେବ ।

ଅମୂଭାଇ ହସିଲେ; କହିଲେ, ଆଚ୍ଛା ।

ବୋଉ କଅଣ ଭାବୁଥିଲା, ହଠାତ୍ ପଚାରିଦେଲା, ଅମୂ, ବଧୂବାବୁଙ୍କ ପୁଅର କଅଣ ବାହାଘର ଠିକ୍ ହେଲାଣି ?

ଅମର ଭାଇ କହିଲେ, ପାତ୍ରୀଟିଏ ଖୋଜୁଥିଲେ ତ । କେତେ ଜାଗାରେ ସମ୍ବନ୍ଧ ପଡ଼ିଥିଲା । କେଉଁଠି ଠିକ୍ ହୋଇଛି କି

ନାହିଁ ମୁଁ ଜାଣେ ନାହିଁ । କାହିଁକ ? ଓ, ବୁଝିଲ । ସତେ, ଗୀତା ଯଦ ପ୍ରବୋଧବାବୁଙ୍କ ହାତ ଧରନ୍ତା କେଡ଼େ ଭଲ ହୁଅନ୍ତା । ମୁଁ ନଜେ ପଗ୍ଭରବ । ତୁମେ ରହ । ଠାକୁରଙ୍କ ଉପରେ ଭରସା ରଖ ।

ମୁଣ୍ଡର ଲୁଗାଟିକୁ ଟାଣି ଅନ୍ୟମନା ହେଲାପରି ରାଧାକୁ କହିଲ, ଧବଳେଶ୍ୱର ପରା ଡଙ୍ଗାରେ ଯାଆନ୍ତି ?

ରାଧା ମୋତେ ଚମୁଟି ଦେଇ କହିଲା, ରହ, ଧବଳେଶ୍ୱର କଥା କାଲ ସକାଳେ ବୁଝିବା ।

ବୋଉ କହିଲା, ବଡ଼ ଲୋକ ସେମାନେ ।

ଅମୁଭାଇ କହିଲେ, ସେ ଧନ ଖୋଜନ୍ତି ନାହିଁ । ସେ ଗୃହାନ୍ତ ବୋହୁଟିଏ । ସୁନ୍ଦର, ଗୁଣର, ଠିକ୍ ଆମ ଗୀତା ପର । ଠାକୁରଙ୍କର ଯାହା ବରାଦ ଥିବ ହେବ । ମଣିଷର କ ଚଳ ? ଦେଖାଯାଉ, ପ୍ରସ୍ତାବ ପକାଇବା । ଗୀତାକୁ ସେମାନେ ଆଗ ଦେଖନ୍ତୁ । ସେମାନଙ୍କର ମନ ମାନୁ । ସେଇଠୁ ଯେଉଁ କଥା ।

ବୋଉ ତୁନ ରହିଲା ।

ଭାବିଲ, ପଗ୍ରକ୍ଷା, ପରୀକ୍ଷାର ବେଳ ଆସିଛି, ଭାଗ୍ୟର ଖେଳ । ସେ ଗୃହାନ୍ତ ବୋହୁଟିଏ, ସୁନ୍ଦର, ଗୁଣର, ଠିକ୍ ମୋଓର ପର ! ଅମୁଭାଇଙ୍କ ଆଖିରେ ଗୀତା ସୁନ୍ଦର, ଗୀତା ଗୁଣର । ଯେଉଁମାନେ ତାଆର ପରୀକ୍ଷକ ତାଙ୍କ ଆଖିକୁ ଗୀତା କପରି ଦଶିବ ?

—ଅଣତ୍ରିଂଶ—

ଅମର ଭାଇଙ୍କ ବସାଟି ଗ୍ଲୋଟ । ବାଟଘରକୁ ଛାଡ଼ଦେଲେ ଆଉ ଦଓଟି ବଖରା । ଟଞ୍ଚା ଭିତରକୁ କବାଟ । ରାସ୍ତାଆଡ଼କୁ

ଗୋଟିଏ କଣ ଝରକା । ଅଗଣା ଭିତରେ କୂଅ । କୂଅକୁ ଲଗି ନୂଆଣିଆ ଗୋଷାଇଘର ।

ବାଟଘରକୁ ଲଗି ଯେଉଁ ଘରଟି ସେଇଥିରେ ଅମର ଭାଇ ରହନ୍ତି । ସେପାଖ ଘରଟି ଟିକିଏ ବଡ଼ । ତେଣୁ ଆଉ ଦି ଜଣ ସେଥିରେ ରହନ୍ତି । ଆମର ରହିବା ପାଇଁ ଅମରଭାଇ ପ୍ରଥମ ବଖରାଟିଏ ଛାଡ଼ିଦେଲେ ।

ରାସ୍ତା ପାଖ ଝରକାକୁ ଲଗି ଖଟ ପଡ଼ିଛି । ଏ ପାଖ କାନ୍ଥକୁ ଲଗି ଯେଉଁ ବେଞ୍ଚ, ତା ଉପରେ ଖଣ୍ଡିଏ ଟ୍ରଙ୍କ, ଗୋଟିଏ ବସ୍ତାନି ଓ କେତେ କାଗଜପତ୍ର, ବହି ରଖାହୋଇଛି । ଅଲଗୁଣୀରେ ଦି ତିନି ଖଣ୍ଡ ଲୁଗା ଓ ସତରଞ୍ଜି ।

ମୁଁ କ୍ଳାନ୍ତ ହୋଇଥିଲି । ଖଟ ଉପରେ ଯାଇଁ ବସିଲି । ବୋଉ ଓ ରାଧା ଅମର ଭାଇ ସଙ୍ଗେ ଖଞ୍ଜା ଭିତରେ ବୁଲି କେଉଁଠି କ'ଣ ରହେ, କେତେ ଘରଭଡ଼ା ଇତ୍ୟାଦି ଖବର ବୁଝିଲେ । ଦଶ ବାର ବର୍ଷର ଟୋକାଟିଏ ଖୁମା, ସେମାନଙ୍କର ରୋଷାଇ କରେ । ଅମରଭାଇଙ୍କ କହିବାମତେ ସେ ନଳଟେଣ ଜଳାଇ ମୋ ଥିବା ଘର ବେଞ୍ଚ ଉପରେ ଥୋଇଦେଇ ଗଲା ।

ସମସ୍ତେ ସେଇ ଘରକୁ ଫେରିଆସିଲେ । ଅମରଭାଇ ବୋଉକୁ କହିଲେ, ଦିନଯାକ ଉପାସ ପଡ଼ିଛ, ଖୁମା ରୋଷାଇ ବସାଉ । ଧାନାକୁ ସଙ୍ଗରେ ନେଇ ମୁଁ ବଜାରକୁ ଯାଉଛି, ପରିବା ପତ୍ର କିଣି ତା ହାତରେ ପଠାଇଦେବି । ମୁଁ ଟିକିଏ ଉକିଲ-ବାବୁଙ୍କ ଘରକୁ ଯିବି । ଆସୁ ଆସୁ ଡେରି ହୋଇପାରେ ।

ସେ ବଜାରକୁ ବାହାରିଲେ । ଧାନା ତାଙ୍କ ସଙ୍ଗରେ ଗଲା । ଆମକୁ ଦେଖି ଅମୁଭାଇ ଯେଉଁ ବୁଢ଼ାବାବୁଙ୍କ କଥା କହୁଥିଲେ, ସେ ମଧ୍ୟ କୁଆଡ଼କୁ ଚାଲିଗଲେ । ଖୁମାକୁ ରୋଷାଇରେ ସାହାଯ୍ୟ କରିବାକୁ ବୋଉ ଗଲା ରୋଷଘରକୁ । ରାଧା ମୋ ପାଖରେ ରହିଲା ।

ମୁଁ କହିଲି, ରାଧା, ଘରେ କ୍ଳାନ୍ତ ଲାଗୁଛି, ଶୋଇବାକୁ ଇଚ୍ଛା ହେଉଛି ।

ରାଧା କହିଲା, ଶୋଇପଡ଼ ନା । ଉଠ, ମୁଁ ପାରିଦଏଁ ।

ଖଟ ଉପରେ ସତରଞ୍ଜି ଖଣ୍ଡେ ପାରିଦେଲା । ମୁଁ ବାହୁ ଉପରେ ମୁଣ୍ଡ ଦେଇ ଶୋଇଲି ।

କହିଲା, ତମେ ଏକୁଟିଆ ଥା ଦେଖି, ଡରିବ ନାହିଁ । ମୁଁ ବୋଉଙ୍କ ପାଖକୁ ଯାଏଁ ।

କହିଲି, ମୁଁ କଅଣ ପିଲାଛୁଆ ହୋଇଛି କି ଡରିବି ? ଲାଲଟେଣ କମାଇଁ ଦେଇ ତୁ ଯା, ମୁଁ ଶୋଉଛି ।

ନିଦ ହେଲା ନାହିଁ । ମଶାଙ୍କ ଦାଉରେ ଛଟପଟ ହୋଇ ଏକର ସେକର ହେବାକୁ ଲାଗିଲି । ଝରକାବାଟେ ପଦାକୁ ଚାହିଁଲି । ରାସ୍ତା ସେପାଖେ ଏ ଘର ସାମନାରେ ବିଧୁବାବୁଙ୍କର ଘର । ଉଚ୍ଚ ଏକମହଲା କୋଠା । ରାସ୍ତା ଉପରେ ବିଜୁଳି ଆଲୁଅରେ ଦେଖାଯାଉଥାଏ । ଝରକାଗୁଡ଼ିକ ସବୁ ବନ୍ଦ ହୋଇଛି । ଜଣା-ଯାଉଛି, ଯେପରି ଘରେ କେହି ନାହିଁ ।

ଭାବିଲି, ଯାହା ଅସମ୍ଭବ ସେ କଥା ମନକୁ ଆଣି ବୃଥାରେ ବାଉଳା ହେବା ଉଚିତ ନୁହେଁ । ତଥାପି କେଜାଣି କାହିଁକି ମନ ହେଉଥାଏ, ଥରେ ପ୍ରବୋଧବାବୁଙ୍କୁ ଦେଖନ୍ତି କି ! ଦେଖନ୍ତି ଦୂରରୁ ..., କିନ୍ତୁ କାହିଁକି ? ସଂସାରରେ କେତେ ଧନୀ, କେତେ ବିଦ୍ୱାନ୍ ଅଛନ୍ତି । ପ୍ରବୋଧବାବୁଙ୍କୁ ଦେଖିଲେ ବେଶି କଅଣ ହେବ ?

ଅମରଭାଇ ପାଗଳ । କେଉଁ ଆଶାରେ, କି ସାହସରେ ସମ୍ବନ୍ଧ ପକାଇବେ ? ଲୋକହସା ହେବେ । ମୋଠିର ପାଇଁ ଲୋକହସା ହେବେ, କାରଣ, ସେ ମୋତେ ଭଲ ପାଆନ୍ତି ? ଚମକି ପଡ଼ିଲି ନିଜର ଚିନ୍ତାରେ । ସେ ମୋତେ ଭଲ ପାଆନ୍ତି ନାହିଁ ।

ତା ହୋଇଥିଲେ ଅନ୍ୟ ଜଣକ ବିଷୟରେ ସ୍ୱପ୍ନ ପକାଇବାକୁ ଅଗ୍ରହ ଦେଖାନ୍ତେ ନାହିଁ ।

ବୋଉ ଆସି ଡାକଲା । ମୁଁ ଜବାବ ଦେଲି । ସେ କହିଲା, ଗୀତା, ଆ ଯିବା ରଘୁନାଥଜୀ ମନ୍ଦିରକୁ, ଦିଅଁ ଦର୍ଶନ କରି-ଆସିବା ।

ରାଧା କହିଲା, ନାଇଁ, ସେ ଶୋଇଥାଉ, ଆସ ଆମର ଯିବା । ଘରେ ତ ଖାମା ଅଛି । ମନ୍ଦିର ତ ପାଖରେ ।

ବୋଉ କଅଣ ଭାବି କହିଲା, ହଉ ତେବେ ଥା । ଗୀତା, ତୁ ଥା, ଆମେ ଆସୁଛୁ ।

ମୁଁ ରହିଲି । ସେମାନେ ଚାଲିଗଲେ । ମଶା ଉତ୍ପାତରୁ ରକ୍ଷା ପାଇବାକୁ ମଶାରୀ ପକାଇ ଶୋଇବାକୁ ଚେଷ୍ଟାକଲି ।

କେତେବେଳେ ମୋତେ ନିଦ ହୋଇଗଲା ମୋର ଖିଆଲ ନାହିଁ ।

—ଚାଲିଶ—

ଜୀବନର କେଉଁ ମୁହୂର୍ତ୍ତରେ କଅଣ ଘଟେ ସବୁ ମନେ ରହେ ନାହିଁ । ଭୁଲି ଅତୀତ ଆଡ଼କୁ ଆଖି ଫେରାଇଲେ ଯେଉଁ ଦୃଶ୍ୟ ମଣିଷର ଆଖିରେ ପଡ଼େ ସେ ସତ ହେଲେ ବି ସ୍ୱପ୍ନ ପରି ମନେହୁଏ । ଦୁଃଖ ଆସେ କି ସୁଖ ଆସେ କହିପାରିବ ନାହିଁ । ତେବେ ମୋର ମନେହୁଏ, ବର୍ତ୍ତମାନର ଅବସ୍ଥା ଉପରେ ଅତୀତ ସ୍ମୃତିର ସୁଖଦୁଃଖ ନିର୍ଭର କରେ ।

କଟକରେ ଗୋଟିଏ ରାତି ।

ଯାହା ଯାହା ଘଟିଗଲା, ଆଜ ଭାବିଲେ ମନେହୁଏ ସେ ସବୁ ଯେପରି ବାସ୍ତବ ନୁହେଁ, କେବଳ ସ୍ୱପ୍ନ । ଯାହା ଘଟିଥିଲା, ପର ଜୀବନ ଉପରେ ତାର ଛାଇ, ତାର ପ୍ରଭାବ ପଡ଼ିଥିଲେ ମଧ୍ୟ ପର ଜୀବନର ଗତିକୁ ବଦଳାଇ ପାରିନାହିଁ । ଯେତିକ ଭାବେଁ, ଭାଗ୍ୟ ବା ନିୟତି ବା କେଉଁ ଅଦେଖା ହାତର ରଚନା ଉପରେ ବିଶ୍ୱାସ ସେତିକ ଦୃଢ଼ ହୁଏ । କ୍ଷଣକର ବ୍ୟବଧାନରେ ଜୀବନର ଗତି ବଦଳିଯାଏ, ସୁଖଦୁଃଖ ଓଲଟପାଲଟ ହୋଇଯାଏ ।

ସ୍ୱପ୍ନ ପରି ଜଣାଯାଉଥିଲା ମତେ, କିଏ ଯେପରି ମୋର ମଶାରି ପାଖରେ ଠିଆହୋଇ ଡାକୁଛନ୍ତି, ଅମର, ଅମର, ସଞ୍ଜବେଳଟାରେ ଶୋଇଛ କାହିଁକି ? ଦେହ ପୁଣି ଖରାପ ହେଲା କି ?

ନିଦ ମୋର ଭାଙ୍ଗୁଥାଏ, ପୁଣି କ୍ଳାନ୍ତ ଆଖିପତା ମାଡ଼ିହୋଇ ପଡୁଥାଏ । ଅପରିଚିତ କାହାର ସ୍ୱର ! ଉଠି ବସିବାକୁ ଇଚ୍ଛା ହେଉଥାଏ । ଅବଶ ଦେହ ଉଠୁ ନ ଥାଏ ।

କାହା ହାତର ସ୍ପର୍ଶ ମୋର କପାଳରେ ଲାଗିଲା । ଉଠି ବସିଲି । କାହାର ହାତଟିଏ ମଶାରି ଭିତରୁ ପଦାକୁ ବାହାରିଗଲା । ଚମକି ଚାହିଁଲି । କିଏ ? ଘରଭିତରେ କମା ହୋଇଥିବା ଲଣ୍ଠଣଟି ତେଜା ହୋଇ ଉଜ୍ଜ୍ୱଳ ଭାବରେ ଜଳୁଛି । ମଶାରି ପାଖରେ ଜଣେ କିଏ ଠିଆ ହୋଇଛନ୍ତି । ଭୟରେ ଦେହ ଥରିଉଠିଲା । ଡରି ଡରି ମଶାରି ଟେକି ପଦାକୁ ବାହାରି ଆସିଲି । ଅପରିଚିତ ଭଦ୍ରଲୋକଟି ଅପ୍ରସ୍ତୁତ ହୋଇ ପଛକୁ ଘୁଞ୍ଚିଗଲେ । ମୁଁ ତାଙ୍କୁ ଆଉଜି ଠିଆ ହେଲି ।

ଥରଟିଏ ତାଙ୍କ ମୁହଁକୁ ଚାହିଁଛି, ଥରଟିଏ । ମନରେ କିପରି ଧାରଣା ହେଲା, ସେଇ ସେ ପ୍ରବୋଧବାବୁ, ଯାହାଙ୍କ କଥା ମୁଁ ଶୁଣିଥିଲି, ଯାହାଙ୍କ ସମ୍ବନ୍ଧରେ କେତେ ରାତି ଉନିଦ୍ର ହୋଇ

ଆଖି ଲୁହରେ ହାତ ଓଦା କରିଥିଲି । ଆଉଥରେ ଚାହିଁବାକୁ ପ୍ରବଳ ଇଚ୍ଛା ହେଉଥାଏ । ଭୟରେ, ସଙ୍କୋଚରେ ଆଖି ଟେକି-ପାରିଲି ନାହିଁ ।

ସେ ଫେରିପଡ଼ି ଦ୍ୱାରମୁହଁକୁ ଗଲେ । ଅତିଲ କଣ୍ଠରେ ଡାକଲେ, ଖିମା !

ଜବାବ ଦେଇ ଖିମା ପାଖକୁ ଆସିଲା । ପଚାରିଲେ ଧୀରେ, କଏରେ ?

ଖିମା ଉତ୍ତର ଦେଲା, ଅମରବାବୁଙ୍କ ଘରୁ କଏ ସବୁ ଆସିଛନ୍ତି ।

ଓ, କହି କଟେଇ ଚାହିଁଲେ ମୋ ଆଡ଼କୁ । ମୁଁ ଆଡ଼େଇ ଗଲି । ସେ ଡାଣ୍ଡ଼ଘରଆଡ଼େ ଯାଉଣୁ କହିଲେ, ଖିମା, ବାପାବୋଉ କୁଆଡ଼େ ଯାଇଛନ୍ତି କହିପାରିବୁ କିରେ ? ଆମ ଚାକରଟା ତ ଯେପରି ଓଲୁ ଭୁ ଜାଣୁ, କିଛି କହିପାରୁନାହିଁ ।

ଖିମା କହିଲା, ଦିନ ରାତ ଲାଗି ହେଉଥିଲା, ଘୋଡ଼ାଗାଡ଼ି ଚଢ଼ି ସେମାନେ କୁଆଡ଼େ ଗଲେ । ମୁଁ ଡାଣ୍ଡରେ ବସିଥିଲି, ଦେଖିଛି ।

କହିଲେ, ଏତେବେଳଯାଏ ଆସିନାହାନ୍ତି । ଅଚ୍ଛା, ଅମର ?

ସେ ଯାଇଛନ୍ତି ବଜାରକୁ ।

ତା ପରେ ଭୁନ ଭୁନ କଅଣ ପଚାରିଲେ । ଖିମା କଅଣ ଉତ୍ତର ଦେଲା ମୁଁ ଶୁଣିପାରିଲି ନାହିଁ । ସେ ଫେରିଗଲେ ! ମୁଁ ଝରକା ବାଟେ ପଦାକୁ ଚାହିଁଲି । ସାଇକେଲ ଚଢ଼ି ସେ ସଙ୍ଗେ ସଙ୍ଗେ କୁଆଡ଼େ ଚାଲିଗଲେ ।

ମୋର ଦେହ ଗୋଟାଗୁଏଁ ଥରୁଥାଏ । ଖିମାକୁ ପାଖକୁ ଡାକ ପଚାରିଲି, ସେ କଏ ଖିମ ?

କହିଲି, ଆମ ବସା ଆଗରେ ବାବୁଙ୍କ ଘର । ଅମରବାବୁଙ୍କୁ ଖୋଜୁଥିଲେ ।

ମୁଁ ରହି ରହି ପଚାରିଲି, ତୁମ ତୁମ କଅଣ ପଚାରୁଥିଲେରେ ?

ସେ ହସିଲା । କିଛି କହିଲା ନାହିଁ ।

ଗେହ୍ଲେଇ ପଚାରିଲି, କହୁନୁ ଖିମ ?

ଖିମା କହିଲା, ପଚାରିଲେ, ସେ ଘରେ ଯେଉଁ ଝିଅଟି ଅଛି ସେ କିଏ ?

ମୁଁ କହିଲି, ସେ ଅମରବାବୁଙ୍କର କିଏ ହୁଅନ୍ତି ।

ଖିମା ଫେରିଗଲା ଘରକୁ ଗଲା ।

ମୁଁ ପୁଣି ମଶାରି ଟାଣି ଖଟଉପରେ ଶୋଇଲି । ଭାବିଲି, କଅଣ ସେ ମନେ କରିଥିବେ ? କେତେ ଚିନ୍ତା ମନକୁ ଆସିଲା । ସବୁ ଯେପରି ଗୋଳମାଳିଆ ହୋଇଗଲା । ଦୁଇଆଖି ଉଛୁଳି ଲୁହଧାର ଗଡ଼ି ଆସିଲା ।

—ଏକଗୁଳିଣ—

ସୁକ୍ଷଣରେ କି କୁକ୍ଷଣରେ ଜାଣେ ନାହିଁ, ଯାହାଙ୍କୁ ମୁଁ ମନେ-ମନେ ଖୋଜୁଥିଲି ସେହି ପ୍ରବୋଧବାବୁଙ୍କ ସଙ୍ଗେ ମୋର ଅନଦ୍ଭୁତ ଦେଖା ହେଲା । ସେ ମଧ୍ୟ ମୋତେ ଦେଖିଲେ । କିନ୍ତୁ ସେ ଜାଣିଲେ ନାହିଁ ମୁଁ କିଏ; ବୁଝିଲେ ନାହିଁ ମୋ ମନର ଗୋପନ ବେଦନା । ତାଙ୍କ ହାତର ଥରଟିଏ ସ୍ପର୍ଶ ମନରେ ଯେଉଁ ଆଶା ଉନ୍ମାଦନାର ଢେଉ ଖେଳାଇ ଦେଇଥିଲି, ତାର ପ୍ରଭାବରେ ଆଉ ମୋର ନିଦ ହେଲାନାହିଁ । କି ଆଶାରେ କେଜାଣି ମୋର ମନ ଉଲ୍ଲସି ଉଠିଲା ।

ବୋଉ ଓ ରାଧା ଫେରିଆସିଲେ । ଅମରଭାଇ ମଧ୍ୟ ଫେରିଲେ । ମୋ ଥିବା ଘରକୁ ଆସି ପଚାରିଲେ ବୋଉକୁ, ଗୀତା ଶୋଇପଡ଼ିଛି ?

ବୋଉ କହିଲା, ହଁ ।

ଅମରଭାଇ କହିଲେ, ଏତେବେଳଯାଏ ବିଧୂବାବୁ କି ତାଙ୍କ ସ୍ତ୍ରୀ ଫେରିନାହାନ୍ତି । ପ୍ରବୋଧବାବୁ ଆସି ମୋତେ ଖୋଜୁଥିଲେ, ଖିମା କହୁଛି । ସେ କୁଆଡ଼େ ଗୀତାକୁ ଦେଖି ଯାଇଛନ୍ତି ।

ବୋଉ କାଳେ କଅଣ କହିବ ବୋଲି ମୁଁ ଭୟରେ ସବୁ ଶୁଣି ଚୁପ ହୋଇ ମିଛରେ ଶୋଇଥାଏ ।

ଖିମା ଆସି କହିଲା, ସେ ଏଇ ଦୁଆରମୁହଁକୁ ଆସି ଦେଈଙ୍କି ଦେଖି ଫେରିଗଲେ । ମୁଁ ରୋଷଘରେ ଥିଲି । ସେ ତ ଜାଣନ୍ତି ନାହିଁ ଆପଣଙ୍କ ଘରୁ କିଏ ସବୁ ଆସିଛନ୍ତି ବୋଲି ।

ଖିମାକୁ ରୋଷଘରକୁ ପଠାଇଦେଇ ଅମରଭାଇ କହିଲେ, ଭଲ ହେଲା । ମୁଁ ନିଜେ ପ୍ରବୋଧବାବୁଙ୍କୁ କହିବି । ସେ ଯଦି ମଙ୍ଗନ୍ତି ତାଙ୍କର ବାପା ମା ଖୁସି ହେବେ ।

ଘଣ୍ଟାକ ପରେ ଗୋଟିଏ ଘୋଡ଼ାଗାଡ଼ି ଆସି ପ୍ରବୋଧବାବୁଙ୍କ ଘର ଆଗରେ ଠିଆହେଲା । ଗାଡ଼ିରୁ ଓହ୍ଲାଇ କିଏ ସବୁ ଘର-ଭିତରକୁ ଗଲେ । ମୁଁ ଝରକା ବାଟେ ଚାହିଁ ରହିଥାଏଁ । କିଛି ସମୟ ପରେ ତାଙ୍କ ଘରର ଝରକା ସବୁ ଖୋଲିଗଲା । ବିଜୁଳି ଆଲୁଅରେ ଘରଭିତର ଉଜ୍ଜ୍ୱଳ ଦେଖାଗଲା ।

ଅମରଭାଇ ତାଙ୍କ ଘରକୁ ଗଲେ । ପ୍ରାୟ ଅଧଘଣ୍ଟାକ ପରେ ଫେରିଆସିଲେ । ମୁଁ ପିଣ୍ଡାରେ ଖାଲି ବସିଥାଏ । ସେ ବୋଉକୁ ଘର ଭିତରକୁ ଡାକି ନେଇଗଲେ । ରାଧା ମଧ୍ୟ ମୋ ପାଖରୁ ଉଠିଗଲା । ଘଟଣାଟି ବୁଝିବାକୁ ଆଗ୍ରହରେ କାନ ଡେରି ରହିଲି ।

ଅମରଭାଇ କହିଲେ, ଭାଗ୍ୟରୁ ବଳ ବଡ଼ କିଛି ନାହିଁ । ସ୍ୱାମୀ ସ୍ତ୍ରୀ ଦୁହେଁ ଯାଇଥିଲେ ଆମର ଓକିଲଙ୍କ ଘରକୁ—କାଶୀବାବୁଙ୍କର ଗୋଟିଏ ଝିଅଟି ଅଛି ଯେ ତାକୁ ଦେଖିବାକୁ ।

ବୋଉ ପଚାରିଲା, କଅଣ ଦେଖିଲେ ?

ଅମୁଭାଇ ଦୁଃଖିତ ହୋଇ କହିଲେ, ଝିଅଟିକୁ ମୁଁ ଦେଖିଛି । ସେମିତି ସୁନ୍ଦର ନୁହେଁ, ତେବେ ସେ ପାଠ ପଢ଼ିଛି । ବାଳିକା ସ୍କୁଲକୁ ଯାଏ । ଭଲ ଗୀତ ବୋଲି ଜାଣେ । ବୁଣାବୁଣି କାରିଗରି କାମ ଜାଣେ ।

ରାଧା କହିଲା, ଝିଅପିଲାର ଏ ସବୁ ଜାଣି ଲାଭ ନାହିଁ । ଯେତେ ଯାହା ଜାଣିଲେ ଝିଅ ଜନମ ଚୂଲିମୁଣ୍ଡିକୁ ।

ଅମରଭାଇ କହିଲେ, ଯାହାର ଯେମିତି ରୁଚି । ବୁଢ଼ାବୁଢ଼ୀ ଦୁହେଁ ଆଜ ସ୍ପଷ୍ଟ ଜବାବ ଦେଇ ଆସିଛନ୍ତି । ଛାଡ଼, ଯାହାର ଭାଗ୍ୟ ଯେଉଁଠି । କାହିଁ ଗୀତା, ଆଉ କାହିଁ ନମିତା ।

ମନରେ ଦୁଃଖ ହେଲା । ସେ ଦୁଃଖ ବେଶି ବେଳ ରହିଲା ନାହିଁ । ଆଶା ଉତ୍ତେଜନାର ଭଙ୍ଗାଗଢ଼ା କେତେ ତ ସହିଛି । ଏଇ ସାମାନ୍ୟ ଘଟଣାରେ ବିବ୍ରତ ହେବି କାହିଁକି ? ତଥାପି, ପ୍ରବୋଧବାବୁଙ୍କ ହାତର ଉଷୁମ ପରଶର ସ୍ମୃତି ମୋର ମନ ବିଚଳିତ କରେ । ତାଙ୍କର ଥରଟିଏ ବାଙ୍କୁଲି ଚାହାଁଣୀ ମୋ ଆଖି ଆଗରେ ପୁଣି ପୁଣି ଦିଶିଯାଏ । ଛାତିରେ ସ୍ପନ୍ଦନ ଦ୍ରୁତ ହୁଏ ।

—ବୟଃସନ୍ଧି—

ଯେତେ ଚେଷ୍ଟା କଲି ଭାଗ୍ୟ ବା ନିୟତିର ଦୋହାଇ ଦେଇ ନିଶ୍ଚିନ୍ତ ରହିବି, ଅବୋଧ ମନ ମାନିଲା ନାହିଁ । ଏଣୁ ତେଣୁ କେତେ ଚିନ୍ତା ମନରେ ପଶିଲା । ଅମରଭାଇ କହିଗଲେ, ପ୍ରବୋଧ-

ବାବୁଙ୍କର ବାହାଘର କେଉଁ କାଶୀବାବୁ ଓକିଲଙ୍କ ଝିଅସଙ୍ଗେ ବଷପୂରେ ସ୍ଥିର ହୋଇଗଲା । ସେଥିରେ ମୋର କଅଣ ଥାଏ ? ଦୁନିଆରେ କେତେ ପ୍ରବୋଧବାବୁ ଅଛନ୍ତି, କେତେ ନମିତା ଅଛନ୍ତି, ଆଉ ମୋର ପରି କେତେ ଦରିଦ୍ର ଗୀତା ପଡ଼ି ଅଛନ୍ତି । କାହା ଭାଗ୍ୟରେ କଣ ଲେଖାଅଛି ଆଗରୁ କହିହେବ ନାହିଁ ।

ବୋଉ ଓ ରାଧା ବଧୂବାବୁଙ୍କ ଘରକୁ ବୁଲିଯିବେ ବୋଲି ଆଗରୁ ପ୍ରସ୍ତାବ କରିଥିଲେ । କିନ୍ତୁ ଅମରଭାଇଙ୍କ କଥା ଶୁଣି ସେ ପ୍ରସ୍ତାବ ବନ୍ଦ ରହିଲା । ଅମରଭାଇ କହିଥିଲେ, ବଧୂବାବୁଙ୍କ ସ୍ତ୍ରୀ ଆମକୁ ଦେଖିବାକୁ ଧାଇଁଆସିବେ । କାହିଁ ଆସିଲେ ନାହିଁ ତ !

କଥା ହେଲା, ପାହାନ୍ତାରୁ ଉଠି ଆମେ ଧବଳେଶ୍ୱର ଯିବୁ । ଖରା ଟାଣ ହେବା ଆଗରୁ ଦେବଦର୍ଶନ କରି ତେଣେ ତେଣେ ଗାଁକୁ ଫେରିବୁ ।

ଖିଆପିଆ ସାରି ସମସ୍ତେ ଶୋଇଲେ । ରାସ୍ତାପାଖ ଝରକାକୁ ଲାଗିଥିବା ଖଟ ଉପରେ ମୁଁ ଶୋଇଲି । ଖଣ୍ଡେ ସତରଞ୍ଜି ପାରି ତଳେ ଶୋଇଲା ବୋଉ, ଦୁଆର ମୁହଁ ପାଖକୁ ରାଧା । ମଶା-କାମୁଡ଼ାରୁ ଉଦ୍ଧାର ପାଇବାକୁ ଅମୁଭାଇ ହିଁ ଆମ ଉପରେ ମଶାମାରି ବର୍ଣ୍ଣଟିଏ ଜାଳିଦେଇ ଯାଇଥାନ୍ତି । ସେ ଶୋଇଥାନ୍ତି ବାଟଘରେ ।

ବୋଉ ଓ ରାଧାକୁ ସଙ୍ଗେ ସଙ୍ଗେ ନିଦ ହୋଇଗଲା । ମୋ ମୁଣ୍ଡ କପର ଗରମ ହୋଇଯାଇଥିଲା । ଏକଡ଼ ସେକଡ଼ ହୋଇ ଖାଲି ଛଟପଟ ହେଉଥାଏ । ବେଳେବେଳେ ଉଠି ବସୁଥାଏ । ଘର ଭିତରେ ଅନ୍ଧାର; କିନ୍ତୁ ରାସ୍ତା ଉପରେ ଦୂର ବିଜୁଳି ଆଲୁଅର ଫିକା ପରଶ ଲାଗିଥାଏ । ବଧୂବାବୁଙ୍କ ଝରକାଗୁଡ଼ିକ ଉଜ୍ଜ୍ୱଳ ଦିଶୁଥାଏ । ଶୁଏ, ଛଟପଟ ହୋଇ ପୁଣି ଉଠି ବସେ । ପଦାକୁ ଘଡ଼ିଏ ଅନାଏଁ, ପୁଣି ଶୋଇବାକୁ ଚେଷ୍ଟା କରେଁ ।

ଦୂରରୁ ଘଣ୍ଟାର ଶବ୍ଦ ଶୁଭିଲା । ଦଶଟା ବାଜିଲା । ଆଖି ବୁଜି ମୁହଁମାଡ଼ି ବିଛଣାରେ ପଡ଼ିରହିଲି । କିଏ ଜଣେ ଦାଣ୍ଡ କବାଟ ଖଡ଼୍ ଖଡ଼୍ କରି ଡାକିଲେ, ଅମର, ଅମର ।

ମୋର ଗ୍ଭଇ ନିଦ ଭାଙ୍ଗିଗଲା । ଆଖି ଖୋଲି କାନ ଡେ଼ରିଲି । ପୁଣି ସେହି ଡାକ, ଦୁଇ ତିନି ଘଣ୍ଟା ପୂର୍ବେ ଯେଉଁ ଡାକ ଅତି ପାଖରେ ମୁଁ ଶୁଣିଥିଲି । ଯାହାଙ୍କର ହାତର ଅମୃତ ପରଶ ମୋର କପାଳରେ ଲାଗିଥିଲା । ସେ ପ୍ରବୋଧବାବୁ । ଉଠି ବସିଲି । ଭାବିଲି, ପୁଣି କେଉଁ ଉଦ୍ଦେଶ୍ୟରେ ରାତି ଅଧରେ ଆସି ସେ ଡାକୁଛନ୍ତି ? ମୁଣ୍ଡ ନୁଆଁଇ ମୁଁ କାନ ପାରି ରହିଲି ।

ପ୍ରବୋଧବାବୁ କହିଲେ, ଅମର, ସଞ୍ଜବେଳେ ତମକୁ ଖୋଜିବାକୁ ଆସି ଯେଉଁ ଓଲମି କରିଛି କଅଣ କହିବି ! ଅଫିସରୁ ଆସି ଦେଖିଲି, ଘରେ ବାପା ବୋଉ କେହି ନାହାନ୍ତି । ଭାବିଲି, ତମର ବସାରେ ବସି ଗଳ୍ପ କରି ଘଣ୍ଟାଏ ଅଧେ କଟାଇଦେବି, କିନ୍ତୁ•• ·········

ସବୁ କହିଲେ । ଏଣେ ଘରଭିତରରେ ମୁଁ ଗୋଟାଗ୍ଭଏଁ ଥରୁଥାଏଁ । ଅମରଭାଇ କଅଣ ଭାବିଥିବେ । ଏ ସବୁ କଥା ମୁଁ ବୋଉଠାରୁ ଲୁଗ୍ଭଇ ରଖିଛି । ସେ ଶୁଣିଲେ କଅଣ କହିବ । ଛି ।

ପ୍ରବୋଧବାବୁ ପଗ୍ଭରିଲେ, ତୁମର କଅଣ ହୁଅନ୍ତି ? ମୁଁ ପ୍ରଥମେ ଭାବିଥିଲି•••କିନ୍ତୁ ତୁମେ ତ ବାହା ହୋଇନାହଁ ବୋଲି ମୋର ଧାରଣା ଥିଲା । ଧୀମାକୁ ପଗ୍ଭରିଲାରୁ ସେ କହିଲା ।

ଅମରଭାଇ କହିଲେ, ଯେ ମୋର ପିଉସୀ ଘର ଲେଖାରେ ଭଉଣୀ ହେବ । ଧବଳେଶ୍ୱର ଦର୍ଶନ କରିବାକୁ ଆସିଛନ୍ତି । ସକାଳେ ଗ୍ଭଲିଯିବେ ।

କହିଲେ, ରାତି ଅଧରେ ତୁମକୁ ଉଠାଇ ଏ ସବୁ କହିବାର କାରଣ ହେଉଛି କାଲେ ତୁମେ କଅଣ ଭାବିବ ।

ଅମରଭାଇ କହିଲେ, ଘରବ ? ମୁଁ କଅଣ ଆପଣଙ୍କୁ ଚିହ୍ନେ ନାହିଁ ପ୍ରବୋଧବାବୁ ? ଗୀତା ମୋର ଭଉଣୀ, ସେ କଅଣ ଆପଣଙ୍କର ଭଉଣୀ ନୁହେଁ ?

ସେ ଉତ୍ତର ଦେଲେ ନାହିଁ । ଦହେଁ ହାତ ଧରାଧରି ହୋଇ ଆଗକୁ ଗଲେ । ନିଜ ଉପରେ ବିରକ୍ତି ଆସିଲା । କାହିଁକି ମୁଁ ଅନ୍ଧାରରେ ବସି ଛଟପଟ ହେଉଛି, କାହିଁକି ବା ଭବିଷ୍ୟତ କଥା ଭାବି ଅଶାନ୍ତିରେ ବେଳ କାଟୁଛି ? ଭାଗ୍ୟରେ ଯାହା ଥିବ ହେବ, ଆଜି, ଯାହା ହେବ, ମାରବରେ ତାହାକୁ ବରଣ କରି ଅଦେଖା ହାତର ନିର୍ଦ୍ଦେଶରେ କାଠ ଗୁଳିବାକୁ ହେବ ।

ଶୋଇଲି । ସପନ ଦେଖିଲି, ବେଦ ଉପରେ ବାପାଙ୍କ ପାଖରେ ବସିଛି । ଶଙ୍ଖ ମଧୁର ବାଜୁଛି । ଦୁଇଟି ହାତକୁ ଏକାଠି ବାନ୍ଧି ପୁରୋହିତ ମନ୍ତ୍ର ଉଚ୍ଚାରୁଛନ୍ତି ।

ସପନ ଦେଖିଲି, ବିଜୁଳି ଆଲୁଅ ସେ ଜାଳିଲେ । ମୁଣ୍ଡରୁ ଓଢ଼ଣା ଘୁଞ୍ଚାଇ ଗୁନ ଗୁନ କହିଲେ ହସିହସିକା, ଚିହ୍ନି ପାରୁଛ ?

ହସିଲି ।

ସେ ଯେ ପ୍ରବୋଧବାବୁ । ସେ ହସି ହସି ମୁହଁ ନୋଇଁଲେ । ଓଠର ମଧୁର ମୂର୍ଚ୍ଛାଳିଆ ଚରଣରେ ଆଖି ବୁଜିଲି । ଦେହକୁ ଆଉଜାଇ ନେଲେ ଛାତି ଉପରକୁ । ଆଖି ଖୋଲିଲି । ମୁଣ୍ଡ ଟେକି ମୋର ସର୍ବସ୍ୱଙ୍କର ହସ ହସ ମୁହଁକୁ ଚାହିଁଲି ।

ଚମକି ଉଠିଲି । ସେ ପ୍ରବୋଧବାବୁ ନୁହନ୍ତି, ସେ ଦାମ-ଭାଇ । ତାଙ୍କୁ ଠେଲିଦେଇ ପଛକୁ ଘୁଞ୍ଚିଆସିଲି । ବୋଉକୁ ଡ଼ାକି ଘୁଡ଼ିଲି ।

ନଦ ଭାଙ୍ଗିଲା । ସପନ ଅପସରିଲା । ଦେହଟା ବରଡ଼ାପତ୍ର ପରି ଥରୁଥାଏ । ପାହାନ୍ତା ହେଲାଣି । କେତେବେଳୁ ବୋଉ ଓ ସୁଧା ଉଠିସାରିଲେଣି ।

—ଉପସଂହାର—

ରାତି ପାହାନ୍ତାରୁ ଆମେ ଧବଳେଶ୍ୱର ବାହାରିଲୁଁ । ବିଧୂବାବୁଙ୍କ ଧଳା ଡେଙ୍ଗା କୋଠାକୁ ଅନାଇଁ ମୋର ନୀରବ ବିଦାୟ ଜଣାଇଲି । ବାପାଙ୍କର ଶେଷ ଇଚ୍ଛାର ସମାଧି ସେଇଠି । ଧବଳେଶ୍ୱର ଯିବା ଆଉ ଦରକାର ନ ଥିଲା । ମୋର ଇଚ୍ଛା ଓ ଆଗ୍ରହ ଭାଙ୍ଗି ଯାଇଥିଲା । ଘରକୁ ଫେରିଲେ ଭଲ ହୁଅନ୍ତା । ପୁରୁଣା ପରିସ୍ଥିତି ମଝିରେ ଆବଦ୍ଧ ରହିଲେ ନୈରାଶ୍ୟର ଦୁଃଖ ଓ ସପନର ଉତ୍ତେଜନା ଦୂର ହୁଅନ୍ତା । ନିତିଦିନିଆଁ ଆଲୁଅ ଭିତରେ ଜୀବନ ଚାଲନ୍ତା ତାର ମଣ୍ଡାବାଟ ଧରି ।

ଧବଳେଶ୍ୱର ଯିବାକୁହିଁ ହେବ । ଆଗରୁ ଯେଉଁଥିପାଇଁ ଏତେ ଆଗ୍ରହ ଦେଖାଇଛି, ଆଜ ମନା କରିହେବ ନାହିଁ ।

ଭଲ ଲାଗିଲା । ବାଟରେ କେତେ ନୂଆ ନୂଆ ଦୃଶ୍ୟ ଦେଖି ମୋର ଆଖି ସେଥିରେ ଲାଗି ରହିଲା । କଟକ ସହରର ବଡ଼ ବଡ଼ କୋଠାବାଡ଼ି, ସହର ସେପାଖେ ବୁଦବୁଦକା ଜଙ୍ଗଲ, ଶଗଡ଼ଗୁଳା ଲମ୍ବି ଯାଇଛି, ମହାନଦୀର ପଠା, ବାଲି, ଆଖି ପାଉନାହିଁ ।

ସକାଳ ହେଲା । କଅଁଳ ଖରାରେ ମହାନଦୀର ବଳୁଆ ବାଲି ଚକ୍ ଚକ୍ ହେଲା । ବାଲି ସେପାଖେ ପାଣିର ଧାର ଆଖିକୁ ଶୀତଳ ଲାଗୁଥାଏ ।

ଅମୁଭାଇ କହିଲେ, ଏଇ ମନ୍ଦର ଦିଶୁଛି । ବାଲିରେ ଆଉ ଗାଡ଼ି ଚକ ଗଡ଼ିବ ନାହିଁ । ଏଇଠି ସମସ୍ତେ ଓହ୍ଲାଅ । ଚାଲି ଚାଲି ଯିବ ।

ଗାଡ଼ି ରହିଲା । ଆମେ ଓହ୍ଲାଇଲୁଁ । କେତେ ଲୋକ ଯା ଆସ କରୁଥାନ୍ତି । ଆମର ଆଡ଼କୁ ଥରେ ଥରେ କଣେଇଁ ଚାହାନ୍ତି, ଚାଲନ୍ତି ଆଗକୁ । ଆମେ ପଛରେ ପଡ଼ୁଁ । ବୋଉ ଚାଲିପାରୁ ନ ଥାଏ । ଅମରଭାଇ ଅଗେ ଆଗେ ଯାଉଥାନ୍ତି । ଆମେ ପଛରେ ପଡ଼ିଲେ ସେ ଅଟକି ରହନ୍ତି । ଅପେକ୍ଷା କରନ୍ତି । ଆମେ ଯାଇଁ ମିଶିଯାଉଁ ତାଙ୍କ ସଙ୍ଗରେ ।

ନଈଧାର ପାଖରେ ହେଲୁଁ । ଏଇଠି ପାରି ହେଲେ ଧବଳେଶ୍ୱର ମନ୍ଦିର । ଆଗରୁ କେତେ ଲୋକ ନଦୀ ଏପାଖେ ଅପେକ୍ଷା କରି ରହିଛନ୍ତି । ଡଙ୍ଗା ମଝି ନଈରେ, ସେ ପାଖକୁ ଯାଉଛି । ବସିଲା ଲୋକଙ୍କୁ ଛାଡ଼ି ଫେରିଆସିଲେ ଆମ ଦଫାକୁ ପାରି କରିବ । କେତେ ଡେରି ହେବ କେଜାଣି । କଅଁଳ ଖରା ଟାଣ ହୋଇଆସୁଛି । ଆମେ ସବୁ କ୍ଳାନ୍ତ ହୋଇ ପଡ଼ିଥିଲୁଁ । ଅଣଆଡ଼ୁଆ ହୋଇ ପାଣିକୂଳରେ ବସି ସେପାରିକି ଚାହିଁ ରହିଲି ।

ଡଙ୍ଗା ଫେରିଲା । ଅମରଭାଇ ପଚାରିଲେ, ତୁମେ ସବୁ କଅଣ ଏଣୁ ଗାଁକୁ ଫେରିବ ? ଆମ ବସା ବାଟେ ଗଲେ ହେବ ନାହିଁ ?

ବୋଉ କହିଲା, ଏଇଠୁ ଫେରିଯିବୁଁ ବାପା, ଘିନା ବ୍ୟସ୍ତ ହେଉଛି । କେତେ କାମ ତାଆର ମାରା ହେବଣି । ତମ ବସା ବାଟେ ଫେରିଲେ ବୃଥାରେ ଡେରି ହେବ ।

ଅମରଭାଇ କହିଲେ, ବଧୂବାବୁଙ୍କ ସ୍ତ୍ରୀଙ୍କ ସଙ୍ଗେ ଦେଖା-କରିବ ନାହିଁ ?

ବୋଉ କହିଲା, ଆଉ ଦରକାର ନାହିଁ । ସେମାନେ ପାଠୋଇ ବୋହୂ, ଧର୍ମଘର ଝିଅ ଚାହାନ୍ତି । ଅନ୍ୟଠାରେ ଜବାବ ଦେଇସାରିଲେଣି । ନେଡ଼ିଗୁଡ଼ କଦଳୀକୁ ବହିଯାଇଛି ।

ଅମରଭାଇ ଗମ୍ଭୀର ହୋଇ କହିଲେ, ହଁ, ଘୋଡ଼ଗୁଡ଼ି କହୁଣୀକୁ ବୋହିଛୁ । ତେବେ,........

କଥା ଅପୂର୍ଣ୍ଣ ରହିଗଲା । ଦୂରକୁ ଚାହିଁଲେ । ଆଖି ଉଜ୍ଜ୍ୱଳ ଦିଶିଲା । କହିଲେ, ହେଇ ପ୍ରବୋଧବାବୁ ଆସୁଛନ୍ତି । ଆଜି ତାଙ୍କର ଆସିବାର କଥା ଥିଲା ।

ସାଇକେଲ୍ ଖଣ୍ଡି ବାଟଘରକୁ ଆଉଜାଇ ପ୍ରବୋଧ ବାବୁ ଆମ ପାଖକୁ ଆସିଲେ । ଅମରଭାଇ ଉଠିଗଲେ ତାଙ୍କ ଆଗକୁ । କହିଲେ, ଆପଣ ଥକି ଯାଇଛନ୍ତି ।

ପକେଟରୁ ରୁମାଲ କାଢ଼ି ମୁହଁରୁ ଝାଳପୋଛି ସେ କହିଲେ, ହଁ, ବାଲିରେ ସାଇକଲ୍ ଠେଲି ଆସିବା କେଡେ ମଜା ! ଅତି କଷ୍ଟ ।

କଣେଇଁ ଚାହିଁଲି । ତାଙ୍କର କ୍ଲାନ୍ତ ମୁହଁରେ ମନପୂଲକା ହସ ।

ସପନ ପ୍ରତିମା ! ଜୀବନଟା ଖାଲି ସପନ ହୋଇଥିଲେ ସବୁ ଦୁଃଖ ଦୂରେଇ ରହନ୍ତା ? ନା, ସୁଖର ସପନ ମଝିରେ ବାମଭାଇ ଆସି ଉଭା ହୋଇଥିଲେ !

କାହିଁକି ସେ ଆମର ପଛେ ପଛେ ଗୋଡ଼ାଇ ଆସିଛନ୍ତି ମୁଁ ବୁଝିପାରିଲି ନାହିଁ । ଆଖି ପୂରାଇ ତାଙ୍କୁ ଭଲ କରି ଦେଖିଲି । କେତେ ଲୋକ ଯା ଆସ କରୁଛନ୍ତି । ସମସ୍ତେ ଅପରିଚିତ । ସେ ମଧ୍ୟ ସେହିପରି ଅପରିଚିତ । ଲଜସଂକୋଚରେ ଆଡ଼ ହୋଇ ରହିବାକୁ ମନ କଲିନାହିଁ । ଜୀବନରେ ଯାହାଙ୍କ ସଙ୍ଗେ ଦିନଟିଏ ଦେଖା, ଯାହାଙ୍କ ସ୍ୱାର୍ଥ ସଙ୍ଗେ ମୋର କୌଣସି ସମ୍ବନ୍ଧ ନାହିଁ, ଦୁନିଆର ଶହ ଶହ ଅଜଣା ଅଶୁଣାଙ୍କ ଭିତରୁ ଯେ ଜଣେ, ତାଙ୍କୁ ଆଡ଼ ହୋଇ ରହିବା ଆବଶ୍ୟକ ମଣିଲି ନାହିଁ । ଯିଏ ଯାହା ମନେ କଲେ କରୁ ପଛେ ।

ସେ ଆସି ବୋଉକୁ ପ୍ରଣାମ କଲେ । କହିଲେ, ଆପଣ ଅମରର ଆତ୍ମୀୟ, ତେଣୁ ମୋର ମାଉସୀ ।

ମୁଣ୍ଡଉପରକୁ ଓଢ଼ଣା ଟାଣିଲି । ବୋଉ ଲାଜ ଲାଜ ହୋଇ ଓଢ଼ଣା ଟାଣିଲା ।

ଅମରଭାଇ ବୋଉକୁ କହିଲେ, ବିଧୁବାବୁଙ୍କ ପୁଅ ପ୍ରବୋଧବାବୁ ଏଇ ! ସେ ତ ତମ ପୁଅ ପରି, ତାଙ୍କୁ ଆଉ ହେଉଛ କଅଣ ?

ମୋତେ କହିଲେ, ପ୍ରଣାମ କର ଗୀତା ।

ବାଧା ଆଗ୍ରହରେ ଚାହିଁଲି ।

ଅମରଭାଇଙ୍କର କଥା ମାନିଲି । ଲାଜ ଲାଜ ହୋଇ ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଇଲି । ମୁଣ୍ଡ ନୁଆଁଇ ପ୍ରଣାମ କଲି । ଭୁଣ୍ଡି ଖୋଲିଲି ନାହିଁ ।

ତାଙ୍କର ମୁହଁରେ ରଙ୍ଗ ଉକୁଟିଲା । ସେ ପ୍ରତିନମସ୍କାର କରି ବୋଉକୁ କହିଲେ, ଆପଣମାନେ ଧବଳେଶ୍ୱର ଆସିବେ ବୋଲି ଅମୁବାବୁ କହୁଥିଲେ ।

ବୋଉ ହସିଲା । ଉତ୍ତର ଦେଲା ନାହିଁ ।

—ତଉରାଳାଣ—

ଦୁଇ ତିନିଘଣ୍ଟା ଆମେ ଧବଳେଶ୍ୱରରେ ରହିଲୁଁ । କେତେ ଆଉ ବୁଲିଲୁଁ । ସେ ପାଖରେ ଜଙ୍ଗଲ । ଗଛକୁ ଗଛ ଲଟା ଛନ୍ଦା-ଛନ୍ଦି । ଆବଡ଼ା ଖାବଡ଼ା ଉଠାପଡ଼ା ଗଳିବାଟ । ବୋଉ ଚାଲି-ପାରିଲା ନାହିଁ । ପ୍ରବୋଧବାବୁ ବୋଉର ହାତ ଧରି ବାଟକଢ଼ାଇ ନେଲେ । କେତେ କଅଣ କହିଲେ । ବୋଉ ଉତ୍ତର ଦେଲାନାହିଁ ।

ମତେ ଖୁସି ଲାଗୁଥାଏ । ଏପରି ଅଭିଜ୍ଞତା ମୋର ତରୁଣୀ ଜୀବନରେ ତ ପ୍ରଥମ । ପ୍ରବୋଧବାବୁ ପଛରେ ଆସୁଥାଆନ୍ତି ।

ମୋର ଗୋଡ଼ ଅଟକି ଅଟକି ଯାଉଥାଏ । ରାଧାର ହାତ ଧରି ଯାଉଁ ଯାଉଁ ପଛକୁ ଫେରି ଚାହେଁ ତାଙ୍କର ହସ ହସ ମୁହଁ, ଉଜ୍ଜ୍ୱଳ ଆଖି ଦେଖିବାକୁ । ହାତ ଥରିଉଠେ । ଭୟ ଓ ପୁଲକର ଉଦ୍‌ବୋଳନରେ ଚିତ୍ତ ଭିତରେ କିପରି କଅଣ ଅନୁଭବ କରେ ପ୍ରକାଶ କରିବାକୁ ଭାଷା ଖୋଜି ପାଉନାହିଁ । ଝୁଣ୍ଟି ପଡ଼ୁ ପଡ଼ୁ ରାଧାର ହାତ ଧରି ଅଟକି ରହେଁ । ରାଧା ମୋର ମନର ମଧୁର ବିଚଳିତ ଭାବ ଜାଣେ । ମୋ ମୁହଁକୁ ଚାହିଁ ସାମାନ୍ୟ ହସେ । ହସୁ ହସୁ ମୁହଁ ମୋର ମଉଳିଯାଏ । ଆଖି ତଳକୁ କରି ମୁଁ ଆଗକୁ ଚାଲେଁ ।

ଅମରଭାଇ କେତେ ଦୂରରେ ହେଲେଣି । ବୋଉ ଆସି ମିଶି-ଗଲଣି ଆମ ସାଙ୍ଗରେ ।

ମନ୍ଦିର ପାଖରୁ ଫେରିଗଲାବେଳକୁ ଖରା ଟାଣ ହୋଇଥିଲା । ପ୍ରବୋଧବାବୁ ବୋଉ ସଙ୍ଗେ ଆତ୍ମୀୟତା କରିନେଲେଣି । ବୋଉ ନିଃସଙ୍କୋଚରେ ତାଙ୍କ ସଙ୍ଗେ କଥାଭାଷା ହୋଇ ଚାଲିଛି । ଅମରଭାଇ ମଧ୍ୟ ତାଙ୍କ ସଙ୍ଗେ ସଙ୍ଗେ ଚାଲିଛନ୍ତି । ମୁଁ ଓ ରାଧା ପଛରେ ପଡ଼ିଗଲୁଣି ।

ମୋର ଭାବନା କେଉଁ ଅଜଣା ସମୁଦ୍ରର ଲହରୀ ସଙ୍ଗେ ଉଠି ପଡ଼ି ଧାଇଁଥାଏ । ହତାଶା ଭିତରେ କେଉଁ କ୍ଷୀଣ ଆଶା ଆଲୁଅର ସନ୍ଧାନ ପାଇଥାଏଁ କହିପାରିବି ନାହିଁ । ତାଙ୍କ ଆଡ଼କୁ ଚାହିଁ ମୁଁ ଚାଲିଥାଏଁ । ଅବଶ ଦେହ, ଉଦ୍ଦାମ ଭାବନା । ଅଜଣା ମୋହରେ ନିଜକୁ ଭୁଲିଯାଇଥିଲି ।

ଝୁଣ୍ଟିଲି । ଖଣ୍ଡେ ଗୋଜିଆ ପଥରରେ ଗୋଡ଼ ବାଜିଲା । ରାଧା ମୋ ବାହୁ ଧରି ଅଟକାଇନେଲା । କହିଲା, ତଳକୁ ଚାହିଁ ଚାଲୁନା ଦେଇ, ଦେଖେଁ କଅଣ ହେଲା ।

—ଛଅଷଠି—

ମଗନ ଆଉ ପାଖରେ ରହିଲା । ପ୍ରାଣ ମୋର ଉଚ୍ଛନ୍ନ ହେଲା ଘଡ଼କ ଘଡ଼ । ସେମାନେ ଆସିଲେ ନାହିଁ । ଆସିବେ ନାହିଁ । ଯାହା ଆସୁଛି ତାକୁହିଁ ମଥେ ଅବଲମ୍ବନ କରିବାକୁ ହେବ । ନିୟତିର ନିର୍ଦ୍ଦେଶ ମୁଣ୍ଡ ପାତି ସହିବାକୁ ହେବ । ମୋର ମନ ଆକୁଳ ହୋଇଉଠେ ।

କନିଆଁ ଡାକରା କରି ଗାଁର ବନ୍ଧୁ କୁଟୁମ୍ବ ମତେ ଡାକ-ନଅନ୍ତି । ଆଦର କରି କେତେ କଥା କହନ୍ତି । କାନରେ ସବୁ ବାଜେ, ମନରେ ପଶେ ନାହିଁ । ଦାମଭାଇଙ୍କର ସ୍ତ୍ରୀ ସେହିନ ମନଖୋଲି କଥା କହିଲେ । ଭଲ ମନ୍ଦ କଅଣ କାନେ କାନେ ଶିଖାଇଲେ ।

କହିଲେ, ଗୀତା ମନେ ରଖିଥା, କେବେ କଥା କହିବ ନାହିଁଟି ସେହିନ ରାତିରେ ।

କାନ୍ଦିଲି । କାହାକୁ କଥା କହିବି ନାହିଁ, କାହାକୁ ? ସତେ କଅଣ ଜଣିଆ ହାତ ଧରିବାକୁ ହେବ ? ଜଣିଆ, ସେଇ ହେବ ମୋର ସ୍ୱାମୀ, ମୋର ଦେବତା ! ଇହକାଳ ପରକାଳର ଗତି ମୁକ୍ତି । ଭାଗ୍ୟରେ ଏହାହିଁ ଅଛି ?

ଦାମଭାଇଙ୍କର ସ୍ତ୍ରୀଙ୍କ କୋଳରେ ମୁଣ୍ଡ ରଖି ମନଇଚ୍ଛା କାନ୍ଦିଲି । ତାଙ୍କ ପାଖରେ ଏଇ ମୋର ଶେଷ କାନ୍ଦଣା, ଶେଷ ଅଳି । ମୋ ପାଇଁ ଆଉ ତାଙ୍କର ମନରେ ଅଶାନ୍ତି ହେବ ନାହିଁ । ଦାମଭାଇଙ୍କୁ ଆଉ ସେ ସନ୍ଦେହ କରିବେ ନାହିଁ । ବିଦାୟ ନେଉଛି । କାହିଁକି ଆଉ ସଙ୍କୋଚ, କାହିଁକି ଆଉ ଭୟ ?

ସେ ମଧ୍ୟ କାନ୍ଦିଲେ । ଆଦର କରି ମୋ ଆଖିରୁ ଲୁହ ପୋଛି କଅଁଳେଇ କହିଲେ, ଛି, କାନ୍ଦନା । ତୁମ ମନରେ ମୁଁ ନ ଜାଣି କେତେ କଷ୍ଟ ଦେଇଛି । ସବୁ ଭୁଲିଯିବ, ଗୀତା ।

ବେଳବୁଡ଼ିଲା ବେଳେ ମୋର କୋହ ବଢ଼ିଲା । ସତେ ଦାମଭାଇଙ୍କ ସ୍ତ୍ରୀ ଆଜି ବଦଳିଗଲେ ? ନଜରର ଭୁଲ ସେ ବୁଝିପାରିଲେ ?

ତାଙ୍କର ହାତକୁ ଚପି ଧରି ଲୁହଧୁଆ ଆଖିରେ କହିଲି, ସବୁ ଭୁଲିଯିବ ନୂଆବୋଉ, ଖାଲି ତମର ଏଇ ମିଠା ମନଖୋଲା କଥା ପଦକ ମରିବାଯାଏ ଭୁଲିପାରିବି ନାହିଁ । ନୂଆବୋହୂ, ଚିରଦିନ ମୋତେ ଘୃଣା କରି ଆସିଛ, ଅବିଶ୍ୱାସ କରି ଆସିଛ । ତୁମର ଘୃଣା ଓ ଅବିଶ୍ୱାସର ବୋଝ ମୁଣ୍ଡରେ ବହି ମୁଁ ସେ ପୁରକୁ ଯାଇଥାନ୍ତି । ଆଜି ଅବେଳରେ କାହିଁକି ମୋତେ ଭଲ ପାଇଲ ? କାହିଁକି ମୋ ପାଇଁ ଆଖିରୁ ଲୁହ ପୋଛୁଛ ?

କହିଲେ, ତୁମେ ପାଗଳୀ ହେଲ କି ? କେବେ ତୁମକୁ ଘୃଣା କରିଥିଲି ? ଭୁଲ ବୁଝ ନା, ଗୀତା ! ଯିଏ ମୋର ହାତ ଧରିଥିଲେ ସେ ଅବହେଳା କଲେ, ବାରତୁଣ୍ଡରୁ ବାର କଥା ଶୁଣିଲେ ମନ କଅଣ ହୁଏ ? ସ୍ତ୍ରୀ ଜନ୍ମ ପାଇଛ, ବେଳ ପଡ଼ିଲେ ବଳେବଳେ ବୁଝିବ ।

ଅବାଧ ଲୁହ ବାରଣ ମାନିଲା ନାହିଁ । କେବି କେବି ହୋଇ ଆଖିରୁ ଝରି ପଡ଼ିଲା ।

କହିଲି, ନୂଆବୋହୂ, ଗରିବ ଘରେ ଝିଅ ହୋଇ ଜନମ ହେବା ଯଦି ଅପରାଧ ହୋଇଥାଏ, ସେଇ ଅପରାଧ ମୁଁ କରିଛି । ଗରିବ ସଦାବେଳେ ସ୍ନେହକାଙ୍ଗାଳ । ଅନ୍ୟମାନେ ନାକ ଟେକିଲା-ବେଳେ ଦାମଭାଇ ଟିକିଏ ଆଦର ସ୍ନେହ କରୁଥିଲେ । ଭାଇର ସ୍ନେହ କଅଣ ମୁଁ କେବେ ଜାଣି ନ ଥିଲି । ମା ପେଟରୁ ଜନମିଲି ଭାଇ ପରି ତାଙ୍କୁ ମୁଁ ସ୍ନେହ ଭକ୍ତି କରିଆସିଛି, ପିଲଟି ଦିନୁ । ବଡ଼ ହେଲାରୁ ଆଡ଼େଇ ରହିନାହିଁ । ଏହା ନ୍ୟାୟ କି ଅନ୍ୟାୟ ମୁଁ ଜାଣେ ନାହିଁ । ଯେଉଁ ଗୀତାକୁ ପିଲାଦିନୁ କାଖେଇ କୁଣ୍ଢେଇ

ଗେଲ କରି ଆସିଥିଲେ, ବଡ଼ ହୋଇ ଦୂରେଇ ରହିଲାରୁ ତା ପ୍ରତି ଯଦି ତାଙ୍କ ମନରେ ଅଲଗା ଧାରଣା ଜନ୍ମିଥାଏ, ସେଥିକି ଗୀତା ଦୋଷୀ ହେବ ନାହିଁ । ଦାମଭାଇ ଚିରଦିନ ମୋର ଭାଇ । ଏତିକି ତୁମେ ବିଶ୍ୱାସ କର ନୂଆବୋଉ, ଏତିକି ମୋର ତୁମ ପାଖରେ ଶେଷ ମାଗୁଣି । ମନ କଥା ମୁଁ କହିଦେଇଛି । ସେମାନେ ମତେ ହାଣମୁହଁକୁ ଟାଣି ନେଉଛନ୍ତି; ନେଉନ୍ତୁ । ମନା କରିବି ନାହିଁ, ଅଙ୍କଟ ହେବି ନାହିଁ, ହାଣମୁହଁକୁ ଚାଲିଯିବି; ବେକ ଦେଖାଇବି । ସେମାନେ ସୁଖୀ ହେଉନ୍ତୁ, ତୁମେ ସୁଖୀ ହୁଅ, ନିଶ୍ଚିନ୍ତ ହୁଅ ନୂଆବୋଉ—

ମୋ କଥା ଶୁଣି ସେ ଥକ୍କା ହୋଇ ମୋ ମୁହଁକୁ ଚାହିଁ ରହିଲେ । ଆଖିରେ ଲୁହ ଛଳ ଛଳ ହେଲା । କହିଲେ, ଗୀତା !

ଆଉ କହିପାରିଲେ ନାହିଁ । ମୋର ବେକକୁ ବେଢାଇ ଧରି ସେ କଇଁ କଇଁ ହୋଇ କାନ୍ଦି ଉଠିଲେ ।

—ସତଷଠି—

ପରଦିନ ସଞ୍ଜବେଳ, ନିତେଇଦାଦାଙ୍କର ବାରିଆଡ଼ ବଉଳମୂଳ ଗୁହଣୀ ତଳେ ଅରୁନ୍ଧତୀ ପାଖେ ବସିଛି । କେତେ କଥା ସେ ଗପୁଛି । ସୁଖର କଥା, ତା ଜୀବନର ଆନନ୍ଦର କଥା । ଅଜଣା ମଣିଷ ଯେତେବେଳେ ସ୍ୱାମୀର ଅଧିକାର ପାଇ, ଆଗ୍ରହ, ଆନନ୍ଦରେ ପ୍ରେମର ଅର୍ଘ୍ୟ ନେଇ ଅପରିଚିତା ସ୍ତ୍ରୀ ପାଖକୁ ଆସେ, ସେତେବେଳେ କଅଣ କରିବାକୁ ହୁଏ ।

ଏଇ ଅଜଣା ମଣିଷକୁ ପାଇବା ପାଇଁ ପରି ଉପାସୀ ଆତ୍ମା କେତେ ଉଦ୍‌ବିଗ୍ନ ହୋଇ ଚାହିଁ ରହିଥାଏ ? ତଥାପି, କାହିଁକି ମୁହଁ

ଟେକ ଭଲ କର ଥରେ ଗୃହିବାକୁ ଲଜ ମାଡ଼େ ? ଯାହାର ପରଶ ପାଇଁ ପ୍ରାଣ ମନ ଝୁରି ମରୁଥାଏ, ତାଙ୍କର ପଦଟିଏ କଥା କାନରେ ଲଜକୁଳୀ ଲତାଟି ପରି ଝାଉଁଳ ପଡ଼େ । ଯାହାର ଆତ୍ମାରେ ଆତ୍ମା ମିଳାଇ ଦେବାକୁ ସ୍ଥୂଳ ଦେହର ବନ୍ଧନୀ ଉପରେ ଯେତେ ବିରକ୍ତି ଆସେ, ତାଙ୍କର ପାଖରୁ ଇଚ୍ଛା ବିରୁଦ୍ଧରେ ଅପସରି ରହିବାକୁ ହୁଏ, ଟିକିଏ ଲଜ, ଟିକିଏ ସଙ୍କୋଚ ପାଇଁ । ଆଲୁଅର ଉପସ୍ଥିତି ସହି ହୁଏ ନାହିଁ ।

ଘପ ଲଭେ ।

ଜହ୍ନ ଆଲୁଅ ଘୁରିଆଡ଼େ ବିଞ୍ଚି ହୋଇ ପଡ଼ୁଥାଏ । ଅବଶ ମୁହଁରେ ହାତ ବୋଳି ଦେଇ ଯାଉଥାଏ ଥଣ୍ଡା ପବନ । କହିଲି ଅରୁ, ମନେ ରଖିଥିବୁ ଲୋ, କେତେ ତ ଆଶା ଥାଏ, ଯେତେ ସବୁ ଜଳପୋଡ଼ି ଅଙ୍ଗାର ହୁଏ ।

ଅରୁନ୍ଧତୀ ମୋର ହାତ ଧରି ପଗ୍ଚରିଲା, ଏପରି କାହିଁକି କହୁଛୁ ଗୀତାଅପା ? ସ୍ୱାମୀ-ସ୍ତ୍ରୀର ସମ୍ବନ୍ଧ ଭିତରେ ଧନ ଦଉଲତ ଠିଆହୋଇ ପାରେ ନାହିଁ । ଅଭାବ ଅସୁବିଧା କିଛି ରହେ ନାହିଁ ।

ଆଖିରୁ ଲୁହ ପୋଛି କହିଲି ଭଙ୍ଗାସ୍ୱରରେ, ମନର ଦେବତା ଯଦି ମନନାଶି ନ ହୁଏ ?

ବାଧା ଦେଇ ସେ କହିଲା, ମନନାଶି ନ ହେବ କାହିଁକି ? ଦେବତା ଯଦି ଅଜଣା, ଯେ ଆସିବେ ସେ ହେବେ ମନନାଶି । ମନକୁ ସଫା ରଖିଥିଲେ ହେଲା । ମନ ଯଦି ଝୁରି ମରୁଥିବ ଆଉ କାହା ପାଇଁ, ଜୀବନରେ ଶାନ୍ତି ମିଳିବ ନାହିଁ ।

ପ୍ରତିବାଦ କରିବାର ବେଳ ନ ଥିଲା, ଇଚ୍ଛା ବି ହେଲା ନାହିଁ । ବନ ପୋଡ଼ିଲେ ସମସ୍ତେ ଜାଣିବେ, ମନ ପୋଡ଼ିଲେ କେହି ଜାଣିବେ ନାହିଁ ।

—ଅଠଷଠ—

ସେଇ ଘଣ୍ଟରେ ନଟେଇଦାଦାଙ୍କ ଘରୁ ବମଳାଭାଇଙ୍କ ଘରକୁ ଯାଉଥାଉଁ । ସଙ୍ଗରେ ମୋର ରାଧା ଥାଏ । ଆଜି ବ ଜଣେ ଦ'ଜଣ କଏ ପଛେ ପଛେ ଆସୁଥାଆନ୍ତି ମୋର ମନେ ନାହିଁ । ନିମନ୍ତ୍ରଣ, କନିଆଁ ଡାକରା । ଠାକୁର ଭୋଗ ଖାଇଲା ପରେ ଦିନକୁ କେତେ ଘର ବୁଲି ନିମନ୍ତ୍ରଣ ରଖିବାକୁ ହେବ । ସମସ୍ତଙ୍କର ମାୟାମମତା କାଟି ପରଘରକୁ ଯିବାକୁ ପଡୁଛି । ଆଜି ତ କୌଣସି ସମ୍ପର୍କ ରହିବ ନାହିଁ । ଶରୁ ହେଲେ ବ ତା ମନ ତରଳିବ ।

ବମଳାଭାଇଙ୍କ ଘରକୁ ଯିବାକୁ ଗୋଡ଼ ଚଳୁ ନ ଥାଏ । ଡର ଡର ମାଡ଼ୁଥାଏ । ତାଙ୍କ ସ୍ତ୍ରୀ ଯେପରି ଲୋକ, କାଳେ କଅଣ କହିବେ ?

ବମଳାଭାଇଙ୍କ ସ୍ତ୍ରୀଙ୍କର ସେଦିନର ବ୍ୟବହାର ଦେଖି ଗତକଥା ସ୍ୱପ୍ନପରି ଲାଗିଲା । କେତେ ଆଦର ଯତ୍ନ, କେତେ ଗେହ୍ଲାଳିଆ କଥା । ଯେଉଁ ଅଧଘଣ୍ଟାଏ ତାଙ୍କ ଘରେ ରହିଲି, ଦେଖିଲି, ଆନନ୍ଦରେ କପରି ତାଙ୍କର ଗୋଡ଼ ତଳେ ଲାଗୁ ନ ଥାଏ । କଥା କଥାରେ ମୋର ରୂପ ଗୁଣ, ବୁଦ୍ଧି ର ପ୍ରଶଂସା କରି କେତେ କହୁ-ଥାନ୍ତି । ସତେ ନରଙ୍ଗ ଗାଁରେ ମୋ ପରି ସବସହଣୀ ଝିଅ କଏ ଆଉ ହେବ ? ମାଛିକୁ ମ କହେ ନାହିଁ, ଶରୁ ମିତ୍ର ସମସ୍ତଙ୍କ ପାଖେ ସମାନ, ଯେତେ ଛଳେଇ କହିଲେ ଅବଗୁଣ ପାଏ ନାହିଁ, ଓଲଟି ଜବାବ ଦିଏ ନାହିଁ ।

ରାଧା କଅଣ କହିଥାନ୍ତା, ମୁଁ ତାକୁ ଆଗରୁ ରାଣ ପକାଇ ମନା କରିଥିଲି । କାହା କଥାରୁ କଅଣ ମିଳିବ ? ଲୋକେ ସତରେ ମିଛରେ ଗୁଡ଼ାଏ କହିବେ । କହି କାହାର ଭାଗ୍ୟ ଓଲଟାଇ

ଯାଉବେ ନାହିଁ । କହିବା ଲୋକ ବଡ଼ ନୁହେଁ, ସହିବା ଲୋକହିଁ ବଡ଼ ।

ମୋ କଥା ଶୁଣି ସେ ଚୁପ ହୋଇ ରହିଥିଲା । କିନ୍ତୁ ଚୁପ ରହିବା ତାର ପ୍ରକୃତି ନୁହେଁ ଯାହା ଶୁଣେ, ତାହା ମନକୁ ନ ଆସିଲେ ନବାବ ପୁଅ ହେଲେ ବି ମୁହଁରେ ଜବାବ ଦିଏ । ଖାଲରେ ପଡ଼ୁ କି ତିପରେ ପଡ଼ୁ ସେ ଦିଗକୁ ନଜର ଦିଏ ନାହିଁ ।

ଜହ୍ନରାତି ।

ଦୁଆରେ ଖଣ୍ଡେ ସପ ପଡ଼ିଥାଏ । ସେଇଠି ଆମେ ବସିଥାଉଁ । ଚେଙ୍ଗା ନଡ଼ିଆ ଗଛର ଛାଇ ପଡ଼ିଥାଏ ଦୁଆର ମଝିରେ । ରାଧା ସେଇଠି ଚୁପ ହୋଇ ବସି ସବୁକଥା ଶୁଣୁଥାଏ ଆଗ୍ରହରେ । ବିମଳାଭାଇଙ୍କ ସ୍ତ୍ରୀ ପଦେ କଅଣ କହିଲେ ସେ ଅସ୍ଥିର ହୋଇ-ଉଠେ । ଦୀର୍ଘଶ୍ୱାସ ପକାଇ କହେ, ଦେଖ, ଉଚ୍ଛୁର ହେଉଛି, ଯିବ ନାହିଁ କି ?

କଅଁଳେଇ କରି ବିମଳାଭାଇଙ୍କ ସ୍ତ୍ରୀ କହନ୍ତି, ରହ ବା, ଏମିତି ବ୍ୟସ୍ତ ହେଉଛୁ କାହିଁକି ? ଆଉ ଏମିତି ରାତି କେବେ ଆସିବ ? ଆଲୋ, କିଏ କେତେଦିନ ରହିବ ? କିଛି ରହେ ନାହିଁ ଲୋ, ଏଇ ସ୍ନେହ ଶରଧାଟା ମିଳିଯାଏ । ମନେ ରହେ ।

ସମ୍ଭାଳି ନ ପାରି ରାଧା କହିଲା, ହଁ ସାଆନ୍ତାଣୀ, ମିଳିଯାଏ ମନେ ରହିବ । ଯିଏ ଯାହାର ଭଲ ମନାସେ, ଭଲ କରେ, ସୁଖରେ ରହିଲେ ମଣିଷ ତାକୁ ଭୁଲିଯାଏ ଯିନା, ଯିଏ ଯାହାର ଶିଖ ଦେଖିପାରେ ନାହିଁ, ପଛଆଡ଼ୁ ଗୋଡ଼ି କାଟେ, ସୁଖରେ ଦୁଃଖରେ ସବୁବେଳେ ସେ ମନେପଡ଼େ ।

ଏତିକି କହି ସେ ଉଠିଗଲା ବାଡ଼ିକୁ । କହିଗଲା, ମୁଁ ବାଡ଼ିରେ ଅଛି । ଗପ ସାରି ତମେ ଶୀଘ୍ର ଆସ, ଗୀତା ଦେଖ । ବୋଉ ତେଣେ ରୁନ୍ଧି ବସିଥିବେ ।

ତାର ଅନୁପସ୍ଥିତି ବମଳାଭାଇଙ୍କ ସ୍ତ୍ରୀ ଖୋଜୁଥିଲେ । ସେ ଦାଣ୍ଡକୁ ଚାଲିଯିବାରୁ ମୋର ହାତ ଧରି ଅଟକାଇ କେତେ ଶିଖାଇଲେ । କପରି ପର ଘରେ ଚଳିବାକୁ ହେବ, କପରି କଥା କହିବାକୁ ହେବ ଇତ୍ୟାଦି । ଶେଷକୁ ଥଟ୍ଟାରେ ଥଟ୍ଟାରେ କହିଲେ, ଆଉ ହେବ ନାହିଁ, ମୁହଁ ଲୁଚାଇ ମେଦଟିଏ ହୋଇ ଘର-କୋଣରେ ବସିବ ନାହିଁ ସେଦିନ ପରି । କଥା କହିବ ଆଲୁଅରେ । ଚାହିଁଥିବ ଆଖିକି । ପଚାରିଲେ ଜବାବ ଦେବ । ତା ହେଲେ, କଟିଯିବ ଦିନ ପରେ ଦିନ, ରାତି ପରେ ରାତି, ମନ ଦୁଃଖରେ ନୁହେଁ, ଆନନ୍ଦରେ ।

ଶୁଣିଲି । ଲାଜ ମାଡ଼ିଲା । ଉଠି ଆସିଲି ଦାଣ୍ଡକୁ । ସେ ମୋ ପଛେ ପଛେ ଦାଣ୍ଡକୁ ଆସିଲେ । କହିଲେ, ଗୁରୁମନ୍ତ୍ର ନେଲ ଗୀତା ଦେଇ, ଗୁରୁଙ୍କୁ ପଛେ ଭୁଲିଯାଅ, ମନ୍ତ୍ର ଭୁଲିବ ନାହିଁ ।

ରାତି ଅଧରେ ରାଧା ସାଙ୍ଗରେ ଫେରିଲି ।

## —ଅଣସ୍ତରୀ—

କାଶୀନ୍ ଗାଁ ଗୋଛିଷ୍ଠ ।

ଦୁଇପାଖେ କଞ୍ଚା ବାଡ଼ । ଗ୍ରୁପଗ୍ରୁପିକା ଜହ୍ନ ଆଲୁଅ ଧୂଳି ବାଟ ଉପରେ ମେଞ୍ଚା ମେଞ୍ଚା ହୋଇ ଛିଣ୍ଡି ପଡଥାଏ । ନଈକୂଳ ଆଡ଼ୁ ଥଣ୍ଡା ପବନ ବହିଆସୁଥାଏ ଥିରି ଥିରି । ବାଡ଼ ଗହଳି ଓ ଲୁଗା ପଣତ ଭିତରେ ଲୁଚକାଳି ଖେଳିବାକୁ ତାର ଆଗ୍ରହ । ଆଗରେ ଚାଲିଥାଏ ରାଧା, ପଛରେ ମୁଁ । ପବନ ପରଶରେ ମନଟା ହାଲୁକା ହୋଇଉଠିଲା ।

ଗାଁ ଦାଣ୍ଡେ କଦମ୍ବମୂଳ, ଯେଉଁଠି ଗାଁ ଠାକୁରାଣୀ ଥାଆନ୍ତି, ତାଆରି ପାଖରେ ରାଧା କହିଲା, ଡେରି ହେଲାଣି ଦେଇ, ଚାଲ

ସିଧା ସିଧା ନଈବନ୍ଧକୁ ଉଠିଯିବା । ବନ୍ଧେ ବନ୍ଧେ ଗଲେ ଅଳ୍ପବାଟ ପଡ଼ିବ । ଟିକିଏ ରହି ପୁଣି କହିଲା, ଏ କମଳା ଭାଇଯାଟା କେଡ଼େ ଖରାପ ଲୋକ । ଗୁଳେଇଟାକୁ ସାଙ୍ଗରେ ଟିକେ ପଠାଇଥିଲେ ହୋଇ ନ ଥାନ୍ତା ?

ପରର ନିନ୍ଦା ଶୁଣିବାକୁ ଆଜି ଭଲ ଲାଗିଲା ନାହିଁ । କହିଲି, 'ଭଲ ମନ୍ଦ ଦୁନିଆରେ କଅଣ ? ଭାଗ୍ୟ ନେଇ ସବୁ ଫଳେ । ଭାଗ୍ୟରେ ଥିଲେ ଭଲଲୋକ ବି ଖରାପ ହୁଏ, ମିତ୍ର ହୁଏ ଶତ୍ରୁ, ନୋହିଲେ ସବୁ ଓଲଟିଯାଏ । କମଳାଭାଇଙ୍କ ସ୍ତ୍ରୀ ଖରାପ ନୁହେଁ, ଖରାପ ମୋ ଭାଗ୍ୟ ।

ଗ୍ଲେଷ୍ଠ ହୁଁ ଟିଏ କହି ସେ ତୁନି ରହିଲା ।

ନଈବନ୍ଧକୁ ଉଠିଲୁଁ । ନଈଆଡ଼କୁ ଚାହିଁଲାବେଳକୁ ଖାଁ ଖାଁ ନିଛାଟିଆ ଲାଗୁଥାଏ । ଜହ୍ନ ଆଲୁଅରେ ନଈପଠା, ନଈବାଲି ସୁନ୍ଦର ଦିଶୁଥାଏ । କିନ୍ତୁ ତାଆର ଭିତରେ କପଟ ହତାଶାର ସୂଚନା ପାଉଥାଏ ।

ନଈ ଉପର ଝଙ୍କା କୋଠିଲା ଗଛ, ଯାହା ଭିତରେ ପିଲାଦିନେ କେତେ ଲୁଚକାଳି, ବୋହୂ-ବୋହୂକା ଖେଳଥିଲୁଁ । ଆଜି ଆଖିକୁ କପଟ ଅନ୍ଧାରିଆ ଭୂତ ବସିଲା ପରି ଦିଶୁଛି ।

ପବନ ଜୋର୍‌ରେ ବହିଲା । ରାଧା କହିଲା, ଦେଖ, ଦେଖିଲ, ଆର ଗାଁର ଗଛ ଗହଳ ଦୂରକୁ କେଡ଼େ ଅନ୍ଧାରିଆ, ଭୟଙ୍କାରସ୍ଥା ଦିଶୁଛି । ପାଖରେ ତ ଏମିତି ଦିଶେ ନାହିଁ ।

କହିଲି, ଦୂରକୁ ସବୁ ସେମିତି ଦିଶେ । ପାଖକୁ ଆସିଲେ ସବୁ ଭୟଭ୍ରାନ୍ତ ଚାଲିଯାଏ ।

ଘର ପାଖେଇ ଆସିଲା । ରାଧାକୁ ଆଜି ଏକୁଟିଆ ପାଖରେ ପାଇଛି । ତା ଆଗରେ ସବୁ ମନକଥା ଖୋଲି କହେ ଆଜି

କେବେ କାହାର ପାଖରେ କହିବାର ସୁବିଧା ପାଇବି ନାହିଁ । ତା ଉପରେ ମୋର ବିଶ୍ୱାସ । ଜାଣି ଜାଣି କେବେ ସେ ମୋ ମନରେ ଦୁଃଖ ଦେଇନାହିଁ । କିଛି କରିବାର ଅଧିକାର ବା ଶକ୍ତି ନ ଥିଲେ କଅଣ ହେବ, ସାନ୍ତ୍ୱନା ଦେଇ ବିପଦ କହିପାରିବ ।

କିପରି କଅଣ ଆରମ୍ଭ କରିବ ଭାବୁ ଭାବୁ ଆଖିର ଲୁହ ଖଣ୍ଡେ ଦୂର ଚାଲିଆସିଲା । ଅନ୍ୟ ଉପାୟ ସ୍ଥିର କରି ନ ପାରି ତା ହାତ ଧରି ଅଟକାଇ ରଖି ଡାକିଲି, ରାଧା !

ସେ ବୁଲିପଡ଼ି ମୋ ଆଡ଼କୁ ଚାହିଁ ପଚାରିଲା, କଅଣ ଦେଈ ?

ମୋର ତୁଣ୍ଡ ଖୋଲିଲା ନାହିଁ । ତା ହାତକୁ କୋହଲାଇ ଦେଇ ଥଙ୍ଗେଇ ଥଙ୍ଗେଇ କହିଲି, କିଛି ନାହିଁ, ଚାଲ ।

ସେ ମୋ ମନକଥା ବୁଝିପାରିଲା । ଟେରେଇ ପଚାରିଲା, କଅଣ କହିବାକୁ ବସିଥିଲ,କହୁନା, ମୋ ଉପରେ ତୁମର ଅବିଶ୍ୱାସ ହେଉଛି ।

ଅବିଶ୍ୱାସ କାହିଁକି ହେବ ?

ତେବେ ଆଉ କଣ ? ଦେଈ, କେବେ ମନଖୋଲି ତୁମେ ମତେ କିଛି କହିନାହଁ । ମୁଁ ସିନା ବଳେଇ ପଶେ, ତୁମେ ମତେ ଆଡ଼େଇ ଦିବାକୁ ଚାହଁ । ତୁମର ସାଙ୍ଗସରିସା ହେବାର ବିହିପ ମୋର ନାହିଁ । ତେବେ ବି ମନରେ ଦୁଃଖ ହୁଏ ।

ତୁ ଅନ୍ୟଥା ଭାବିବୁ ନାହିଁ । ତତେ କହିବାକୁ ମତେ ଲାଜ ମାଡ଼େ, ମନରେ ସଙ୍କୋଚ ଆସେ । କହିବି କହିବି ହୋଇ କହି-ପାରେ ନାହିଁ । ସୁବିଧା ବି ମିଳେ ନାହିଁ ।

କେତେ ଗୋଳେଇ ହୋଇ ମତେ ସେ ପଚାରିଲା । ମୁଁ ମନ ଖୋଲି ସବୁକଥା ତା ଆଗରେ କହିଲି । ଚିଠି ଖଣ୍ଡି ଅଣ୍ଟାରୁ କାଢ଼ି ତାକୁ ଦେଖାଇଲି । ମୋ ମନର ଦୁଃଖ କେତେ ପରିମାଣରେ କମି-ଆସିଲା ।

ସେ କହିଲା, ଦେଖ, ସବୁ ଠିକ୍ ହୋଇଯାଇଛି । ଇଆଡ଼େ ଚେଷ୍ଟା କରିବା କି ଅପେକ୍ଷା କରି ରହିବାକୁ ଆଉ ବେଳ ନାହିଁ । ତୁମ ବୋଉଙ୍କୁ ଏ କଥା କହିଲେ କି ବୁଝାଇଲେ ସେ ମାନିବେ ନାହିଁ । ଆକାଶର ଫୁଲ ତୋଳିବାକୁ ସେ ଆଉ ହାତ ବଢ଼ାଇବେ ନାହିଁ ।

ତା ମୁହଁରୁ ନିରାଶାର କଥା ଶୁଣିବି ବୋଲି ମୁଁ ଆଶା କରି ନ ଥିଲି । ଭାବିଥିଲି, ନିଶ୍ଚୟ ସେ ଗୋଟାଏ ଉପାୟ ବତାଇବ । ମୁଁ ମର୍ମାହତ ହୋଇ କହିଲି, ଯାହାର କପାଳ ପୋଡ଼ା, ତା ପାଇଁ ସମସ୍ତେ ନିଷ୍ଠୁର ହୁଅନ୍ତି । ଯାହାକୁ ଭଲ ପାଏଁ, ଯାହାଙ୍କ ଆଡ଼କୁ ମନ ଧାଏଁ, ତାଙ୍କର ସେବା କରିବାର ଅଧିକାର ଜୀବନରେ ପାଇବି ନାହିଁ । ଯାହାକୁ ମୁଁ ଘୃଣା କରେଁ, ଯାହାର ହାତ ଧରିବାକୁ ମୋର ଇଚ୍ଛା ନାହିଁ, ତାଆରି ହାତରେ ମୋତେ ଦେଇ ତମେମାନେ ନିଶ୍ଚିନ୍ତ ହେବ ମନେ କରିଛ । କିନ୍ତୁ, ତମ ମନକଥା ମନରେ ରହିବ......।

ତାର ତୁଣ୍ଡ ଖୋଲିଲା ନାହିଁ । ଖୁଣ୍ଟ ପରି ସେଇ ନଈବନ୍ଧ ଉପରେ ଠିଆହୋଇ ମୋ ଆଡ଼କୁ ଚାହିଁ ରହିଲା ।

ମୁଁ ଆଖିରୁ ଲୁହ ପୋଛି କହିଲି ଭଙ୍ଗା କଣ୍ଠରେ, ଚାଲ୍ ଯିବା ।

ଦେଖ !

ଚାଲ, ଡେରି ହେଉଛି ।

ନୀରବରେ ଆଗେ ଆଗେ ଚାଲିଲା । ହାତରେ ଧରିଥିବା କାଠିଖଣ୍ଡି ଟିକି ଟିକି କରି ବନ୍ଧ ଉପରେ ପକାଇଦେଲା । ଯିଧାର ପଛେ ପଛେ ଚାଲିଲି ।

ସେ କଅଣ ଭାବୁଥିଲା କେଜାଣି, ମୁଁ ଭାବୁଥିଲି, ଦୁନିଆଟା ଖାଲି ଉତ୍ତେଜନାର ଖେଳ । ମନରେ କେତେବେଳେ କେଉଁ

କାରଣରୁ କ ଭାବନା ଆସେ, ମନକୁ ଅସ୍ଥିର କରେ । ତାଆର ଶେଷ ଫଳ ଭଲ ହୁଏ କି ମନ୍ଦ ହୁଏ ଆଗରୁ ଜାଣି ହୁଏ ନାହିଁ ।

ଦୁର୍ଯୋଗରେ ଧବଳେଶ୍ୱରରେ ତାଙ୍କ ସଙ୍ଗେ ମୋର ଦେଖା ହୋଇଥିଲା । ମନରେ ଦୁଃଖ ସୁଖର ଲହଡ଼ି ଉଠିଥିଲା । ସବୁ ବୃଥା, ସବୁ ମିଛ । ମଣିଷ ଜୀବନକୁ ନେଇ ଏପରି ନିର୍ମମ ପରିହାସ । ଯାହା ହେବାର ନୁହେଁ, ସେଥିପାଇଁ ଏତେ ଟଳବଳ ହୁଏ ଜୀବନ ।

ଘର ପାଖରେ ହେଲୁଁ । ବନ୍ଧ ଉପରୁ ଗଡ଼ି ବାର ଗୋହିରୀ ବାଟେ ଯିବାର କଥା । ହଠାତ୍ ରାଧା ଅଟକି ଯାଇ କହିଲା, ଦେଖ, ତମେ ଏତେ ଅସ୍ଥିର ହୁଅ ନାହିଁ । ଭାଗ୍ୟରେ ଯାହା ଥାଏ ତା ଘଟେ । ମଣିଷ ମିଛରେ ମନ ଖରାପ କରେ । ସୁନାଟି, ଏଣୁ ତେଣୁ ଆଉ ଭାବ ନାହିଁ । ଯାହା ଆସୁଛି ଆନନ୍ଦରେ ତାକୁ ବରଣ କରିନିଅ ।

ମୋର ଓଠରେ ହାତ ଦେଇ ସେ ଆହୁରି କେତେ କଅଣ କହି ବୁଝାଇଲା ଆଜି ମୋର ମନେ ନାହିଁ । ତାଆରି କାନ୍ଧ ଉପରେ ମୁହଁ ରଖି ନୀରବରେ ଲୁହ ଢାଳିଦେଲି ।

କେତେବେଳକେ ମୁଣ୍ଡ ଟେକି କାନ୍ଦମିଶା ସ୍ୱରରେ କହିଲି, ରାଧା, ବୋଉକୁ କିଛି କହିବୁ ନାହିଁ ।

କହିଲା, କାହିଁକି କହିବ ? କହିଲେ ସେ କଅଣ କରି ପାରିବେ ?

—ସବୁରି—

ରାତିରେ ନିଦ ହେଲା ନାହିଁ ।

ଭାବିଲି, ଏମିତି ହାନକପାଳୀ କରି ଭଗବାନ ମୋତେ ଜନ୍ମ ଦେଇଛନ୍ତି । ଯେଉଁ ଗଛକୁ ଆଉଜିଲେ ସେ ଗଛ ଟଳି ପଡୁଛି ।

ନିର୍ଲଜ୍ଜ ହୋଇ ମନର କଥା, ନ କହିଲି ଲୋକଙ୍କ ଆଗରେ କହିଲେ ମଧ୍ୟ ଲାଭ ନାହିଁ । ବୃଥାରେ ମନରେ ଅଶାନ୍ତି ଆସୁଛି, ଉତ୍ତେଜନା ବଢ଼ୁଛି । ଭାଗ୍ୟର ଲେଖା ବଦଳାଇବାର ଶକ୍ତି ଯଦି ମଣିଷର ନାହିଁ ବୃଥାରେ ମନକୁ ଛଟପଟ କରି କି ଲାଭ ମିଳିବ ?

ଭାବିଲି, କାହାକୁ କିଛି ନ କହି ପ୍ରବୋଧବାବୁ କି ଅମର-ଭାଇଙ୍କ ନିକଟକୁ ବୋଉ ନାମରେ ଖଣ୍ଡେ ଚିଠି ଲେଖିବି । ମୋର ବାହାଘର ଯେ ସ୍ଥିର ହୋଇଯାଇଛି ଏ ବିଷୟ ତାଙ୍କୁ ଜଣାଇଦେବି । ତେଣିକି ସେମାନଙ୍କର ଯଦି କିଛି କରିବାର ଥାଏ କରିବେ, ନୋହିଲେ ନାହିଁ । ଏକାଥରେ ଅନ୍ଧାରି ପୁରୁଷର ଅଦେଖା ହାତ ଉପରେ ନିର୍ଭର କରି ଅନିଶ୍ଚିତତା ଭିତରେ ଅଣ୍ଡାଳି ହେଲେ ଅନୁତାପ ଆସିବ ।

କାହାକୁ ଲେଖିବି ? ଅମରଭାଇ ନିଶ୍ଚୟ ମୋର ହସ୍ତାକ୍ଷର ଚିହ୍ନିବେ । ପରେ ହୁଏତ ପ୍ରଘଟ ହେବ । ପୁଣି, ଦୁର୍ନାମର ନିଆଁ ଜଳି ଉଠିବ । ବରଂ ପ୍ରବୋଧବାବୁଙ୍କ ପାଖକୁ ଲେଖିଲେ ଭଲ ହେବ । ଏହି ବିଷୟ ଭାବି ଭାବି ରାତି ପାହିଲା, ଆଖି କଷା ପଡ଼ିଲା ନାହିଁ ।

ପରଦିନ ଦି ପହରେ ସୁବିଧା ପାଇ ପ୍ରବୋଧବାବୁଙ୍କ ପାଖକୁ ଚିଠି ଲେଖି ବସିଲି । ତାଙ୍କ ପାଖକୁ ଚିଠି ଲେଖୁଛି । ଆନନ୍ଦରେ ଛାତି ନାଚି ଉଠୁଥାଏ, କିନ୍ତୁ ଭୟରେ ହାତ ଥରୁଉଠେ । ଅକ୍ଷର ଗୁଡ଼ାକ ବଙ୍କା ବଙ୍କା ହୋଇଯାଏ । ତଥାପି, ଲେଖିଲି । ହୃଦୟର ସବୁ ଉତ୍ତେଜନା, ମନର ସବୁ ଆଶା ଏକାଠି କରି ଚିଠି ଲେଖିଲି । ଅବିନତ ଆତ୍ମା ମୋର ଢଳି ପଡ଼ିଥିଲା ପ୍ରତ୍ୟେକ ପଦରେ । ଆଖି ଲୁହରେ ଓଦା ହୋଇଥିଲା ଗ୍ଲେଟ କାଗଜ ଖଣ୍ଡେ ।

ସାହସ ହେଲା । ଯେତେ ଲୁଚାଇଲେ ଲୁଚିବ ନାହିଁ । ସେ ନିଶ୍ଚୟ ବୁଝିବେ, ଚିଠିଟି କିଏ ଲେଖିଛି । କେତେ ଜାଗାରେ କଟା

କଷ୍ଟ ହୋଇଛୁ । ବୋଉ ନାମରେ ଲେଖୁ ଲେଖୁ ଠାଏ ଠାଏ ଗୀତା ପରିବର୍ତ୍ତେ ମୁଁ ଲେଖି ତାକୁ କାଟି ପୁଣି ଗୀତା କରିଛୁ । ଯାହା ହେଉ, ଆଉ ଥରେ ଉଚ୍ଚାରିବାକୁ ବେଳ ନାହିଁ, କଏ କାଳେ ଆସିଯିବ ।

ଚିଠିଖଣ୍ଡ ଲେଖିସାରି ହାତ ତିଆରି ଖଣ୍ଡେ ଲଫାପା ଭିତରେ ରଖିବା ଆଗରୁ ଲୁହଭରା ଆଖିରେ ଥରେ ପଢ଼ିଗଲ—

ସ୍ନେହର ପ୍ରବୋଧ,

ତମର ଚିଠି ପାଇ ଖୁସି ଲାଗିଲା । ସତେ ଏକା ଧବଳେଶ୍ୱରରେ ଥରଟିଏ ଦେଖା, ସେତିକରେ ଆପଣାର କରିନେଲ । ଆମକୁ ଦେଖିବାକୁ ଏତେ ଆଗ୍ରହ ହୁଏ ? ଆମେ ଦରିଦ୍ର ବୋଲି ଆସିବାକୁ ବେଳ ମିଳେ ନାହିଁ ପରା !

ଗୀତା ତମର ସ୍ନେହ ଭୁଲିପାରି ନାହିଁ । ସେ ଦିନ ତା ଗୋଡ଼ ଆଙ୍ଗୁଠିରେ ରୁମାଲ ବାନ୍ଧି ଦେଇଥିଲ । ନିଜର ଭାଇ ହୋଇଥିଲେ କଅଣ ଏପରି କରିପାରିଥାଆନ୍ତା ?

ଗୀତାର ବାହାଘର ଠିକ୍ ହୋଇସାରିଛି । ଏଇ ମାସରେ ହେବ । ସ୍ୱାନକପାଳୀର ବାପ ଭାଇ ନାହାନ୍ତି ଯେ ତା ପାଇଁ ଭଲ ମନ୍ଦ ବାରିବେ । ଗାଁ ଲୋକେ ବୋଝ ଉଠାଇବାକୁ ବାହାଘର କରିଦେଉଛନ୍ତି । ମୋର କି ଗୁରୁ ?

ତମର କଅଣ ବେଳ ହେବ ଆସିବାକୁ ? ମୁଁ ବା କି ସାହସରେ କହିବି ? ଚିଠି ଲେଖିଥିଲ ବୋଲି ଜବାବ ଦେଲି । କଲ୍ୟାଣ ନେବ । ତମର ବାପା ବୋଉଙ୍କୁ ଯଥାବିଧି ଜଣାଇଦେବ । ଗୀତା ପ୍ରଣାମ କହିଛି । ଫେରନ୍ତା ଡାକରେ ବେଉରା ଦେବ ।

। ଇତି ।

ତୁମର

ମାଉସୀ

ଚିଠି ଖଣ୍ଡି ବନ୍ଦ କରି ପାଖରେ ଲୁଗ୍ଇ ରଖିଲି । ଲଫାପା ଉପରେ ମନକୁ ଯାହା ଆସିଲା ଠିକଣା ଲେଖିଦେଲି । ଯାହାଙ୍କ ଉଦ୍ଦେଶ୍ୟରେ ଚିଠିଟି ଲେଖା ହୋଇଛି ସେ ପାଇବେ କି ନାହିଁ, ଠିକ୍ ବେଳରେ ପାଇବେକି ନାହିଁ; ଜାଣେ ନାହିଁ । ପାଉନ୍ତୁ ବା ନ ପାଉନ୍ତୁ, ମନର ରହ ମେଣ୍ଟାଇବାକୁ ଚିଠି ଲେଖୁଛି । ଏଣିକି ଭାଗ୍ୟରେ ଯାହା ଘଟିବ ତନା ଆପତ୍ତି ଅଭିଯୋଗରେ ମୁଣ୍ଡ ପାତି ସହିବାକୁ ହେବ । ମନ ପିନା ଗୃହେଁ ଗଙ୍ଗା, ଅଜଣା ପୁରୁଷର ଅଦେଖା ହାତ କେଉଁ ଅପନ୍ତରକୁ ଟାଣିନଏ ।

ମାଇସଞ୍ଜ ବେଳକୁ ରଧାକୁ ସଙ୍ଗରେ ନେଇ ବାରିଆଡ଼କୁ ଗଲି । ତଳବାରିର ଗୋଟିକିଆ ଆମ୍ବଗଛ ମୂଳେ ତାକୁ ନିର୍ଜ୍ଜନରେ ପାଇ ମନକଥା ଖୋଲି କହିଲି । ସେ ସବୁ ଶୁଣିଲା । ତା ମୁହଁରେ ଭାବ ପରିବର୍ତ୍ତନର କୌଣସି ଚିହ୍ନ ଦେଖିପାରିଲି ନାହିଁ । ଭୟ ହେଉଥାଏ, କାଳେ ସେ ମୋ ପ୍ରସ୍ତାବରେ ରାଜି ନ ହେବ, କାଳେ ସେ ମୋ ଉଦ୍ଦେଶ୍ୟରେ ବାଧାଦେବ ।

ସବୁ ଶୁଣି ସେ ଦୀର୍ଘଶ୍ୱାସ ପକାଇ କହିଲା, ଦେଖ, ମିଛଟାରେ ମନରେ ନଆଁ ଜାଳ ସନ୍ତୁଳ ହୁଅ ନାହିଁ । ମଣିଷ ଯେତିକି ଆଶା କରେ ତାର ଦୁଃଖ ସେତିକି ବଢ଼େ । ତୁମେ ଆଜ ଚିଠି ଲେଖୁଛ, ଚିଠି ଯଦି ସେ ନ ପାଆନ୍ତି କି ଚିଠି ପାଇ ଯଦି କିଛି ନ କରନ୍ତି ?

ଚମକି ଉଠିଲି । ଚିଠି ନ ପାଇବା ତ ଭିନ୍ନେ କଥା, ଚିଠି ପାଇ ଯଦି ସେ କିଛି ନ କରନ୍ତି !

ମୋ ଓର ଆଖି ଆଗରେ ତାଙ୍କର ସୌମ୍ୟ ସୁନ୍ଦର ମୂର୍ତ୍ତିଟି ଆସି ଠିଆହେଲା । ସେଦିନ ସେଇ ନଈକୂଳରେ ତାଙ୍କର ଉଜ୍ଜ୍ୱଳ ଆଖି ଦୁଇଟିରେ ଯାହା ମୁଁ ଦେଖିଥିଲି ସେଥିରେ ଏପରି ସନ୍ଦେହର ଚିହ୍ନ ପାଇ ନ ଥିଲି । ସେ ମୋତେ ଭଲ ପାଆନ୍ତି, ସେ ନିଶ୍ଚୟ

କିଛି କରିବେ । ମୋର ଦୃଢ଼ ବିଶ୍ୱାସ, ନିଶ୍ଚୟ ସେ—କିନ୍ତୁ କଅଣ କରିପାରିବେ ଶେଷ ବେଳରେ ? ଦିନ ପାଖେଇ ଆସିଲା ।

ଦୁଇଆଖି ଲୁହରେ ଭରିଗଲା । ହାତ ପାପୁଲିରେ ଲୁହ ପୋଛି ଆକୁଳ ହୋଇ କହିଲି, ରତି ଯଦି ସେ ନ ପାଆନ୍ତି, ରତି ପାଇ ଯଦି ସେ କିଛି ପ୍ରତିକାର ନ କରନ୍ତି, ତେବେ କଅଣ ଭାବଚ୍ଛ, ଯାହା ଆସିବ ତାକୁ ମୁଁ ଆଖି ବୁଜି ସହିଯିବି ? କାହିଁକି ସହିବି ଲୋ ? ସହିବାର କଅଣ ଆଉ ବାକି ଅଛି ? ପିଲାଦିନୁ ସହି ସହି ଆସିଛି, କେତେ ଦୁଃଖ, କେତେ କଷ୍ଟ, କେତେ ଅପମାନ, ସବୁ ଭବିଷ୍ୟତ ଆଶାରେ । ତମେମାନେ ମୋର ଭବିଷ୍ୟତକୁ ଜାଣି ଜାଣି ପୋଡ଼ିଜାଳି ଦେବାକୁ ବସିଛ, କେଉଁ ଦୁର୍ନାମରୁ ରକ୍ଷା ପାଇବ ବୋଲି ?

ଉତ୍ତେଜିତ ହୋଇ ପଡ଼ିଥିଲି ।

ରାଧା ମୋର ଆଖିରୁ ଲୁହ ପୋଛିଦେଲା । ଆର୍ଦ୍ର କଣ୍ଠରେ କହିଲା, ତମେ ପାଗଳ ହୋଇଛ ଦେଇ ?

ପାଗଳ କାହିଁକି ହେବି । ତୁମେମାନେ ଗୁହୁଁଛ ଦୁର୍ନାମରୁ ରକ୍ଷା ପାଇବ । ଦେଖ୍ ରାଧା, ଆମ୍ଭଗଛର ଏଇ ଡାଳଟି କପରି ତଳକୁ ନଇଁ ଆସିଛି । ଦଉଡ଼ି ଖଣ୍ଡେ ମତେ ମିଳିବ ନାହିଁ କି ? ତେବେ ତ ତୁମେ ସବୁ ମୋ ନେଇ ନିଶ୍ଚିନ୍ତ ହୋଇପାରିବ ?

ମୋ ପାଟିରେ ହାତ ଦେଇ ସେ କହିଲା, ଛି ଦେଇ, ତୁମେ କଅଣ କହୁଛ ?

ତାର ହାତ ଥର ଉଠିଥିଲା ।

କହିଲି, ମିଛ କହୁନାହିଁ । ମନର କଥା ତୋ ଆଗରେ ଖୋଲି କହିଲି ।

ତା ଆଖିରେ ଲୁହ ଦେଖିଲି । ସେଦିନ ସଞ୍ଜର ମହଲିନ ଆଲୁଅରେ ମୋତେ ସେ ଘୁଷି ଉପରକୁ ଟାଣି ନେଇଥିଲା । ମୋର ପିଠି ମୁଣ୍ଡ ଆଉଁସି ଗୁନ ଗୁନ କାନ ପାଖରେ କହିଲା, ମଣିଷ ଯାହା ଖୋଜେ, ପାଏ ନାହିଁ ଦେଖ, ଯାହା ପାଏ ସେଇଆକୁ ଆପଣାର କରନେଲେ ମନ ଶାନ୍ତିରେ ବେଳ କାଟେ । ନ ପାଇଲା ଚିଜକୁ ଝୁରିହେଲେ ଲାଭ ନାହିଁ । ମୁଁ ଆଜି ପୋଚିଲି । ପର ଦୁଆରେ ପାଇଟି କରି ପେଟ ପୋଷେ । ଦିନେ ଖାଇଲେ ଦି ଦିନ ଉପାସ । ଆଗକୁ ପଛକୁ ହାତ ବଢ଼ାଇଲେ କେହି ନାହିଁ । କହିଲ ଦେଖି, ଏଇଆ ମୁଁ ଭାବିଥିଲି ? ମୋ ମନରେ ବଡ଼ ଆଶା କେବେ ପଣି ନ ଥିଲା ?

ସବୁ ମଣିଷ ଏ ଦିଗରେ ସମାନ । ସମସ୍ତଙ୍କର ଆଶା ଥାଏ, ଇଚ୍ଛା ଥାଏ । ସମସ୍ତେ ସୁଖରେ ରହିବାକୁ ଚେଷ୍ଟା କରନ୍ତି । କିନ୍ତୁ ସମସ୍ତଙ୍କ କପାଳ ସମାନ ନୁହେଁ । କାହା ଭାଗ୍ୟରେ କଅଣ ଥାଏ । ତଥାପି ଦେଖ, ଯାହା ଆସେ,ସେଇଆକୁ ନେଇ ବେଳ କାଟିବାକୁ ପଡ଼େ । ଯେଉଁ ଅବସ୍ଥାରେ ପଡ଼ିଲେ ସୁଦ୍ଧା ମୁହଁରୁ ହସ ବାହାରେ । ମନଖୁସିରେ ମୁହୂର୍ତ୍ତେ ହେଲେ କଟେ । ଆଉ ଦେହଗଞ୍ଜିଆ ଦୁଃଖର ଜୀବନରେ ସେହି ସୁଖ, ଆନନ୍ଦର ମୁହୂର୍ତ୍ତିଟି ବଡ଼ ।

ସବୁଦିନେ ରାତି ନ ଥାଏ । ଆଉ, ସବୁ ରାତିରେ ବି ଅନ୍ଧାର ହୁଏ ନାହିଁ । ଅନ୍ଧାର ଭିତରେ ଜହ୍ନ ହସେ । ରାତି ଯାଇ ଦିନ ଆସେ । ଭାଗ୍ୟରେ ଥିଲେ ସେଇ ଜଟକୁ ନେଇ ଚିରଦିନ କାଚ ସିନ୍ଦୁର ଧରି ସୁଖରେ ବେଳ କାଟିବ । ଯେଉଁମାନେ ଶତ୍ରୁତା ସାଧିବାକୁ ବସିଛନ୍ତି, ସେହିମାନେ ପୁଣି ଦିନେ ଝୁରିବେ, ଦେଖିବ ରହ । ଆଜିଠାରୁ ଏତେ ହତାଶ ହେଉଛ କାହିଁକି ?

ଗୀତା ଦେଇ, ସୁନା ଭଉଣୀଟି, ଆଉ ଏଣୁ ତେଣୁ ଭାବ କଷ୍ଟ କରନାହିଁ । ସାନକୁହା ମାନ । ଭଗବାନଙ୍କ ଉପରେ ନିର୍ଭର କର ଯାହା ଆସୁଛି, ଆନନ୍ଦରେ ଗ୍ରହଣ କରନିଅ । ଚିଠିଖଣ୍ଡ ଲେଖିଛ । ମୋତେ ଦିଅ । ମୁଁ ତାକୁ ପଠାଇଦେବ ମନର କ୍ରୋଧ ଶାନ୍ତ ହେବ ।

ମୋ ହାତରୁ ଚିଠିଖଣ୍ଡ ସେ ଟାଣିନେଲା ।

ରାଧାର ଛାତି ଉପରୁ ମୁଣ୍ଡ ଟେକି ତାଆର ମୁହଁକୁ ଚାହିଁଲି । କେତେ ସହାନଭୂତି, କେତେ ବ୍ୟଥା ଭରି ରହିଥିଲା ଚାହିଁରେ ।

—ଏକତ୍ରିଶ—

ଦିନ କେଇଟି ଗହଳ ଚହଳରେ କଟିଗଲା । ଯେଉଁ ଚିଠିଖଣ୍ଡି ପ୍ରବୋଧବାବୁଙ୍କ ପାଖକୁ ଲେଖିଥିଲି, ଯାହାକୁ ରାଧା ମୋ ହାତରୁ ଟାଣି ନେଇଥିଲା, ତାର କି ଗତି ହେଲା ମୁଁ କେବେ ତାକୁ ପଚାରି-ନାହିଁ ।

ମଙ୍ଗଳ ଦିନ ସକାଳେ ।

ଖଞ୍ଜାରେ ଲୋକ ଭିଡ଼ । ଆଜ ସାତ ମାଇପେ ଆସିବେ, ମଙ୍ଗଳ ହାଣ୍ଡି ବସାଇବେ । ସେଥିପାଇଁ ଆଗରୁ ବୋଉ ଯୋଗାଡ଼ କରିବାରେ ବ୍ୟସ୍ତ । ଗାଁ ମାଇପେ ମୋତେ ଘେରି ବସିଛନ୍ତି । ବେଳେ ବେଳେ ପଞ୍ଝା ପଞ୍ଝା ହୋଇ ଆସୁଛନ୍ତି । ମୋତେ ଦେଖି ଫେରିଯାଉଛନ୍ତି । ଏକା ବସି ରହିଥାଏ ରେଣୁ । କଅଣ କହିବାକୁ ହୁଏ, ସୁବିଧା ନ ପାଇ ତୁଣ୍ଡ ଖୋଲି ପାରେ ନାହିଁ । ପାଖରେ ବସି ଗୋଲେଇ ହେଉଥାଏ ।

ଟିକିଏ ସୁବିଧା ପାଇ ମୋର ଆଙ୍ଗୁଠି ଫୁଟାଇ ଏଣିକି ତେଣିକି ଚାହିଁ ସେ କହିଲା, ଗୀତାଅପା, ଗୁପ୍ତ କଥାଟିଏ କହନ୍ତି ଯେ ଡର ମାଡୁଛି, କାଲେ—

କଥାଟି ଅଧାରୁଣି ମୋ ମୁହଁକୁ ଚାହିଁଲି ।

ଭୁନ ଭୁନ କହିଲି, କହିବୁ ଯଦି କହୁନୁ, କାଲେ ପୁଣି କଅଣ ?

କାଲେ ତୋ ମନ କଷ୍ଟ ହେବ ।

ହସି ହସି କହିଲି, ଏମିତି କି କଥା ଯେ ମୋ ମନ କଷ୍ଟ ହେବ ଲୋ ରେଣୁ । କେତେ ତ ଶୁଣିଲଣି, ସବୁ ମତେ ଆଦରେଇ ଗଲଣି । କହ ।

ଟିକଏ ଭାବି କହିଲି, କାଲି ବାପା ବୋଉ ଦୁହେଁ ଭୁନ କଥାଭାଷା ହେଉଥିଲେ, ମୁଁ ଉହାଡ଼ରେ ଥାଇ ଶୁଣିଛି । ତୋ ବର କୁଆଡ଼େ ଗୁଲି ଖାଏ । ଆଉ, ସେଇଥିପାଇଁ ତାକୁ ତା ଭାଇ ଭାଉଜ ପସନ୍ଦ କରନ୍ତି ନାହିଁ । ଘର ଭିତରେ ପଶିଲେ ତା ଭାଉଜ ତାକୁ ସବୁବେଳେ ଆଖିଏ ଆଖିଏ ରଖିଥାନ୍ତି । ଗୋଡ଼େ ଗୋଡ଼େ ଜଗିଥାନ୍ତି । କେତେବେଳେ କୁଆଡ଼େ କେଉଁ ଛଟକରେ—

ତା ତୁଣ୍ଡରେ ହାତ ଦେଇ କହିଲି, ଭୁନ ହ ରେଣୁ, ଆଉ କିଛି କହନା ।

ଆଉ ସେ କଅଣ କହିବାକୁ ଯାଉଥିଲି, ଶୁଣିବାକୁ ଇଚ୍ଛା ମୋର ନ ଥିଲା । ସତ ହେଉ, ମିଛ ହେଉ, ଏଣୁ ତେଣୁ ଶୁଣି ମନ କଷ୍ଟ କରିବି ନାହିଁ ।

ରେଣୁ ଭୁନ ହେଲା ନାହିଁ । କହିଲା, ଶୁଣ ମ ଗୋଟାଏ ମଜାର କଥା । ଥରେ କୁଆଡ଼େ ସେ କାହା ଘରୁ କଅଣ ଚୋରି କରି ବିକି ଗୁଲି ଖାଉଥିଲା ଯେ ପରେ ଧରା ପଡ଼ିଲା । ମାଡ଼ ଖାଇଲା, ହାତ ଗୋଡ଼ ବାନ୍ଧି ତିନିଦିନ କାଳ ଉପାସରେ ଗୁହାଳ ଘରେ ପକାଇଦେଲେ ।

ଆଉ ସହିପାରିଲି ନାହିଁ । କହିଲି, ରେଣୁ, ତୁ କ'ଣ ମୋତେ ଜାଳିପୋଡ଼ି ମାରିବାକୁ ବସିଛୁ ? ‹ଗୁଡ଼ା କାହିଁ ମୋ ଆଗରେ

କହୁଛୁ ? ପର ମଣିଷର ଦୋଷଗୁଣ ଭଲମନ୍ଦ ଶୁଣିବାକୁ ମୋତେ ଭଲ ଲଗେ ନାହିଁ । ସେ ସବୁ କଥାରେ ମୁଁ କାନ ଦିଏ ନାହିଁ ।

ରେଣୁ କହିଲା, ହାତଗଣ୍ଠି ନ ପଡୁଣୁ ତୋର ଏତେ ଯୋଗ ଲଗିଲଣି ଗୀତାଅପା ? ଜଟାଧାରୀଙ୍କର ନନ୍ଦା ସହି ପାରୁନୁ ? ସେ ଶିବକୁ ତୁ ତ ହେବୁ ସତୀ ପାର୍ବତୀ । ଘର ଭଲ ହେବ । ଖାଲି ବଡ଼ମା ଗୋଟାଏ ହଡ଼ା ଦାନ ଦେଲେ ସାଜିବ ।

ହସି ହସି ଲୋଟିପଡ଼ିଲି ।

ପ୍ରକୃତିସ୍ଥ ହୋଇ କହିଲି, ସେତିକ କଣିବାକୁ ତ ବୋଉ ପାଖେ ଖଡ଼ା ବି ନ ଥିବ । ତମର ଛଡ଼ାଟିକୁ ସାତମଙ୍ଗଳା ବାସିଯାଏ ଭଡ଼ା ଦେବାକୁ ଖୁଡ଼ୀ ମଙ୍ଗିବେ ?

ମନ ଦୁଃଖରେ ପୁଣି ହସିଲି ।

କହିଲି, କଥାଟା ମନକୁ ପାଇଲା ପରା ! ହସୁଛୁ ଯେ ?

ତା ଗାଲରେ ସରୁ ଚୁପୁଡ଼ା ମାରି କହିଲି, ହସିବି ନାହିଁ ତ କଅଣ କାନ୍ଦିବି ? ଆଲୋ ରେଣୁ, ଆଜି ମୋର ମଙ୍ଗନ, କାଲି ମୋର ବାହା । କହିଲୁ, ମନ ଖୁସିରେ ଆଜି ଟିକିଏ ହସିବି ନାହିଁ ତୋ ଆଗରେ ? ଜୀବନରେ ଆଉ ଥରେ ମଙ୍ଗନ ଆସିବ କି ? ଆଉ ଥରେ ବାହାଘର ହେବ କି ? ସରିଯିବ । କିଏ କଅଣ, କିଏ ଗୁଳି ଖାଇଲା କି ଗ୍ରେର କରି ମାଡ଼ ସହିଲା, ସେଥିରୁ ମତେ କିଛି ମିଳିବ ନାହିଁ । ସେ ସବୁ କଥା ଶୁଣି ସେ ବିଷୟରେ ଭାବି, ଜୀବନରେ ଏହି ଶୁଭଦିନଟି ନଷ୍ଟ କରିବି ନାହିଁ ।

ରେଣୁ କାବା ହୋଇ ମୋ ମୁହଁକୁ ଚାହିଁଲା । ଥଙ୍ଗେଇ ଥଙ୍ଗେଇ ପଚାରିଲା, ଯାହାର ହାତ ଧରି ଯାହାର ସଂସାରକୁ ଯିବୁ ତା ସମ୍ବନ୍ଧରେ ଦି ପଦ ଶୁଣିବାକୁ ଆଗ୍ରହ ହେଉନାହିଁ ? ତାର ସ୍ୱଭାବଚରିତ୍ର, ଭଲମନ୍ଦ ଜାଣିବାକୁ ଇଚ୍ଛା ହେଉନାହିଁ ? ଯେ ତୋ'ର ସର୍ବସ୍ୱ, ଯେ ତୋର ଦେବତା—

କହିଲି, ଶୋକ କରେ, ପୁଣି ଶୋକ ମରିଯାଏ । ଆଗ୍ରହ ଆସେ, ଆଗ୍ରହ ଭାଙ୍ଗିଯାଏ । ରେଣୁ, ତୁ ଯାହା କହିଲୁ, ସେ ସବୁ ଝିଅର ଜୀବନର କଥା । ଆଜି ମୋର ମଙ୍ଗଳ, କାଲି ମୋର ବାଧା, ଆନନ୍ଦର ଦିନ ଦିଓଟି । ଭବିଷ୍ୟତକୁ ବଦଳାଇବାର ଶକ୍ତି ମୋର ନାହିଁ । ଭବିଷ୍ୟତ ମୋର ହାତରେ ନାହିଁ । କାହିଁକି ମୁଁ କାନ୍ଦିବି, ରେଣୁ ? କାନ୍ଦିବାର ବେଳ ପାଖେଇ ଆସୁଛି । ଆଜି ମୋତେ ହସିବାକୁ କହ । ପ୍ରାଣଭରି ଆଜି ଏ ଶୁଭଦିନରେ ତୋ ପାଖରେ ମୁଁ ହସେଁ; ମନ ଇଚ୍ଛା ହସେଁ । ତୁ ବି ମୋ ସାଙ୍ଗରେ ହସ ରେଣୁ, ଆଉ ସାଙ୍ଗ ହୋଇ ହସିବାର ବେଳ ଏ ଜୀବନରେ ମୋର କେବେ ଆସିବ ନାହିଁ ।

ଗାଲ ଉପରେ ତତଲା ଲୁହର ଧାର ।

ରେଣୁ କହିଲା, ଏଇ ତୋର ମନ ଖୁସି ହସ, ଗୀତାଅପା ? ଏଇଥିପାଇଁ ମୁହଁଟାଣ କରି କଥା କହୁଥିଲୁ ?

ପଣତରେ ଆଖିରୁ ଲୁହ ପୋଛିଲି । ବୋଉ ଘର ଭିତରକୁ ପଶିଆସିଲା । ତା ପଛେ ପଛେ ସୁଧା ।

—ବାସ୍ତର—

ବାହାଘର ଦିନ—

ଗହଳ ଚହଳ । ଖଞ୍ଜା ଫାଟି ପଡ଼ୁଥାଏ । ଗତ ପାହାନ୍ତାକୁ ବର ଆସି ପହଞ୍ଚିଲା । ଆଲୁଅ, ବାଜା, ବାଣ । ନଗ୍ରଙ୍କ ଗାଁରେ ଧନ୍ୟ ଧନ୍ୟ ପ୍ରଶଂସାର ହୁରି ପଡ଼ିଥିଲା । ଏ ଗାଁରେ ଏମିତି ଆଡ଼ମ୍ବରରେ କାହାର ବର ଆସି ନ ଥିଲା ବୋଲି ମାଇପେ କୁହାକୁହି ହେଉଥାନ୍ତି । ସବୁ ଆୟୋଜନ ମହନକେଠା କରିଥିଲେ ।

ସ୍ନା ଭିତରେ କଅଣ ହେଲା କେଜାଣି, ମୋତେ ବାଡ଼ୁଅପାଣି ଗାଧୋଇ ଦେଇ ମାଇପେ ହାଲିଆ ହୋଇ ବସି ପଡ଼ିଲେ । ବେଦିରୁ

କର୍ମ ଆରମ୍ଭ ହେଲା ନାହିଁ । କେଜାଣି କାହିଁକି ବୋଉ ସେଣ୍ଡଘରେ ବସି ଖାଲି କାନ୍ଦିବାକୁ ଲାଗିଲା । ଯିଏ ଯାହା ପଚାରିଲେ କି ବୁଝାଇଲେ ତାହାରିକୁ କିଛି ଜବାବ୍ ଦେଲା ନାହିଁ । ଲୋକଙ୍କ ଭିତରେ ଗୁଞ୍ଜନ ଖେଳିଗଲା । କେତେ ପ୍ରକାରେ କିଏ ଭିନ୍ନ ଭିନ୍ନ କଥାଭାଷା ହେଲେ ମୋର କାନରେ ପଡ଼ିଲା ନାହିଁ । ଘଟଣା କଅଣ ମୁଁ କିଛି ବୁଝିପାରିଲି ନାହିଁ ।

ଗାଁ ମାଇପେ, ଯେଉଁମାନେ ମୋତେ ଘେରି ବସିଥିଲେ, ବୋଉ ପାଖକୁ ଉଠିଗଲେ । ସେ କୁଆଡ଼େ ଘଡ଼ି ଘଡ଼ି ବେହୋଷ ହୋଇ ପଡ଼ୁଥାଏ । ତାକୁ ଦେଖିବାକୁ ମୋର ମନ ଉଚ୍ଛନ୍ନ ହେଉଥାଏ । କିନ୍ତୁ, ଏତେ ଲୋକଙ୍କ ଆଗରେ ଉଠିଯିବାକୁ ସାହସ ହେଉ ନ ଥାଏ ।

ରାଧା ଗୋଡ଼ ଚପି ଚପି ଏ ଘରକୁ ଆସିଲା । ମନେ କରିଥିଲି, ସେ କିଛି କହିବ, କିନ୍ତୁ କିଛି କହିଲା ନାହିଁ । ମିନତିଭରା ଆଖିରେ ତା ଆଡ଼କୁ ଚାହିଁଲି । ମନର କଥା ସେ ବୁଝିଲା । ଆଖିରେ ତାର ଲୁହ ଭରିଗଲା । କିଛି ନ କହି ସେ ଚାଲିଗଲା । ମୁଁ ସନ୍ଦେହରେ ପଡ଼ିଲି ।

ରେଣୁ ଧାଇଁଆସିଲା ବାଣ୍ତିଆଡୁ । ମୋ ପାଖରେ ବସି ଏଣିକି ତେଣିକି ଚାହିଁ ଭିନ୍ନ ଭିନ୍ନ କହିଲା ଆଗ୍ରହରେ, ଦେଖି ଆସିଲି ଲୋ, ତୋର ଜଣାଧାଣା ଶିବକୁ—ବାଣ୍ତିଘରେ ବସିଛି । ଦେଖିବୁ ଗୀତାଅପା, ଏ ବାଟେ ଗଲେ କେହି ଜାଣିବେ ନାହିଁ । ବାଣ୍ତି ଝରକାବାଟେ ଚାହିଁ ଦେଇ ଆସିବୁ । ସବୁ ସଫା ଦିଶୁଛି । ଯିବୁ ?

କହିଲି ତା କାନରେ, ତୁଇ ଦେଖ୍ ଲୋ, ଆଖି ପୂରାଇ ଦେଖ୍, ମୋର ଦରକାର ନାହିଁ ।

ପଚାରିଲା, ଦରକାର ନାହିଁ କାହିଁକି ?

ନିଜ ପ୍ରଶ୍ନର ଉତ୍ତର ନିଜେ ଦେଲା ଭୂଲତା ଟେକି, ଓ ବୁଝିଲି, ବୁଝିଲି, ସବୁଦିନେ ତ ଦେଖୁଥିବୁ, ଅଖା ଟେଧୋଉଥିବୁ, ଗୁଣ ଗାଉଥିବୁ । ଆଜି ଏବେ ଥରଟିଏ ଅନାଇଁ ଆସିଲେ ଅଧିକ କି ହେବ ?

ତା କଥା ଶୁଣି ବିରକ୍ତ ଲାଗିଲା । ଚୁପ ରହିଲି ।

ରେଣୁ କହିଲା, ମଜା କଥା ଶୁଣିଲୁଣି ଗୀତାଅପା, ତୋ ବର ଜଟାଧାରୀ କୁଆଡ଼େ ଅଧା ବାଟରେ ପାଲିଙ୍କିରୁ ଡେଇଁ ପଡ଼ିଥିଲା ଲୋ । ଲୋକେ ତାକୁ ଧରାଧରି କରି ଜବରଦସ୍ତ ଆଣିଛନ୍ତି ।

ରେଣୁ ମିଛ କହେ ନାହିଁ । ଘଟଣା ମିଛ ବୋଲି କହି ହସି ଉଡ଼ାଇ ଦେଇ ହେବ ନାହିଁ । ବିଷୟଟି ଜାଣିବାକୁ ଆଗ୍ରହ ହେଲା । କିନ୍ତୁ ରେଣୁକୁ କିଛି ପଚାରି ପାରିଲି ନାହିଁ । ପଚାରିଲା ଆଖିରେ ତା ମୁହଁକୁ ଚାହିଁ ସାମାନ୍ୟ ହସିଲି ।

ସେ କହିବାକୁ ଲାଗିଲା, ଶୁଣିଲୁଣି ଲୋ, ଜଟାଧାରୀ କୁଆଡ଼େ ଅଧାପାଗଳ । ଗୁଳିଧୂଆଁ ଟିକେ ପେଟରେ ନ ପଶିଲେ ମୁଣ୍ଡ ବିଗିଡ଼ିଯାଏ । ବର ହୋଇତ ପାଲିଙ୍କିରେ ବସିଛି, କିଏ ତାକୁ ଗୁଳିଧୂଆଁ ଆଣିଦେବ ? ବିକଳା ଗଉଡ଼, ଯିଏ ପାଲିଙ୍କି ବୋହି ଚାଲିଥିଲା, ତାକୁ ପିକା ଖଣ୍ଡେ ମାଗିଲା । କାଳେ ଟାଣି ଦେଇଥାଉ । ବିକଳ ମନା କଲାରୁ ତାକୁ ମାରିବାକୁ ସେ ପାଲିଙ୍କିରୁ ଫାଳ୍ କରି ତଳକୁ ଡେଇଁ ପଡ଼ିଲା । ବିକଳାର ଚୁଟି ଧରିଲାରୁ ସେ ଓଲଟିପଡ଼ି ଦେଲା ତ ବ୍ରହ୍ମଗୁପଡ଼ା । ସେଇଠୁଁ ।

ଆଉ କଣ କହିଥାନ୍ତା ଶୁଣିବାକୁ ଆଗ୍ରହ ହେଲା ନାହିଁ । କହିଲି, ରେଣୁ, ଚୁପ ହ । ମୋ ଆଗରେ ଏଗୁଡ଼ା ଗପୁଛୁ କାହିଁକି ? ମୁଁ ତ ତୋତେ ପଚାରୁ ନାହିଁ !

ରେଣୁ ଚୁପ ହେଲା । ମୋ ପାଖରୁ ଉଠି ଚାଲିଗଲା ।

—ତେସ୍ତର—

**ବୋଉ** କାହିଁକି ଏତେ ଦୁଃଖରେ କାନ୍ଦୁଛି, ମୁଁ ଅନୁମାନ କରିପାରିଲି । ଲୋକେ ତାକୁ ଠକୁଛନ୍ତି । ସେମାନଙ୍କର କୁହାରେ-ପଡ଼ି ସରଳବିଶ୍ୱାସୀ ବୋଉ ଅଜାଣତରେ ମୋର ସର୍ବନାଶ କରିବାକୁ ବସିଛି । ଶେଷବେଳରେ ସେ ଏହା ବୁଝିପାରିଛି ।

ଆଉ ଘରୁ କମଳାଭାଇଙ୍କର ପାଟି ଶୁଭିଲା, ଏ କଅଣ କରୁଛ ଖୁଡ଼ୀ, ନିଜେ ଲୋକହସା ହେଉଛ, ଆମକୁ ବି ଲୋକହସା କରିବାକୁ ଯାଉଛ । ବାଜେ ଲୋକଙ୍କର ବାଉ କଥା ଶୁଣି ତୁମେ ପାଗଳ ହୋଇଛ । ଜଣି ପାଗଳ ନୁହେଁ କି ଗୁଲିଖୋର୍ ନୁହେଁ । ତୁମର ଯଦି ସନ୍ଦେହ ହେଉଛି, ଚାଲ ତା ସଙ୍ଗେ ଚୂଡ଼ାନ୍ତ କଥାଭାଷା ହୋଇ ଆସିବ । ମନର ସନ୍ଦେହ ତୁଟିଯିବ ।

ବୋଉ ଗର୍ଜିଉଠିଲା, ଥାଉ ଥାଉ ତମର ଭଲଲୋକ । ମୁଁ ମୋ ଝିଅକୁ ବାହା କରିବି ନାହିଁ । ଗାଁ ଲୋକଙ୍କ ସମସ୍ତେ ଏକାଠି ହୋଇ ମୋ ପ୍ରାଣରୁ ଅଧିକ ମୋର ସୁନା କଣେଇ ଝିଅକୁ, ତାର ବାପ, ଭାଇ ନାହାନ୍ତି ବୋଲି ବୁଡ଼େଇ ମାରିବାକୁ ବସିଛ । ବଞ୍ଚିଥାଉଣୁ ସେ କଥା ମୁଁ କେବେ କରାଇଦେବି ନାହିଁ । ସେଥିପାଇଁ ତମେ ସବୁ ଯାହା କରିବାର କର ।

କମଳାଭାଇ କହିଲେ, ଆହା, ତୁମେ ଏତେ ଅଧୀର ହୁଅନା । ଶୁଣ, କଥାକୁ ଭଲ କରି ବୁଝ । ବର ଆସି ଦାଣ୍ଡ-ଦୁଆରେ । ବିନାଦୋଷରେ ସେ କଅଣ ଆଉ······ ।

ମୁହଁରୁ କଥା ଛଡ଼ାଇନେଇ ବୋଉ ପୂର୍ବପରି କଠୋର କଣ୍ଠରେ କହିଲା, ଫେରିଯିବ, ବର ଫେରିଯିବ । ତମ ଯେଉଁମାନେ ମତେ ଗରିବ ନିଆଶ୍ରା ଦେଖି, ମୋର ଆଖିର ପିତୁଳା, ଜୀବନରୁ

ବଳ ଅଧିକ, ଅଲଅଳ, ନରମାଖୀ ଝିଅଟିକୁ ବନାଦୋଷରେ ଅଥଳ ପାଣିକ ଠେଲ ବୁଡ଼ାଇ ମାରବାକୁ ଚକ୍ରାନ୍ତ କରଥିଲ, ସେହିମାନେ ଏଥିକୁ ଦାୟୀ ।

ବିମଳାଭାଇ ବେହିଆପଣ କରି ପଳୁଚଲେ, ଗୀତାର ଅବସ୍ଥା କଅଣ ହେବ ? ମଙ୍ଗୁଳା ଝିଅ, ବାହ୍ଲନ୍ଦ ପଡ଼ିବ । ଗାଁ ନନ୍ଦା, ନାଁ ନନ୍ଦା । ଛି, ମିଛକଥା ଶୁଣି—

ବୋଉ ଖରି ସ୍ବରରେ କହିବାକୁ ଲଗିଲ, ରଖ ତମର ଭଲଲୋକ, ବିମଳା ! ତମେ ମୋ ଆଗରୁ ଚୁଲିଯାଅ । ଗୀତା ମୋର ଝିଅ, ତମର ଝିଅ ନୁହେଁ । ତା କଥା ମୁଁ ବୁଝିବ । ତା ବୋଝ ତମ ମୁଣ୍ଡରେ ଲଦା ହୋଇ ନାହିଁ । ମଙ୍ଗୁଳା ଝିଅ ହେଉ, ତା ଚନ୍ତା ତମକୁ କ ଗାଁ ଲୋକଙ୍କୁ ଆଉ କରବାକୁ ପଡ଼ିବ ନାହିଁ । ଏବର ଫେରଯାଉ—କହିଦଅ ।

ତମେ ବିମ, କାଗଜ ଖଣ୍ଡରେ ମୋର ଦସ୍ତଖତ କରାଇ ନେଇଛ । ଘରଡ଼ିହଟା ନଚେଇ ବନ୍ଧା ରଖିବେ ବୋଲ କହି ନଙ୍କେ କଣିଲ ବୋଲ ଲେଖିଛ । ଦଶ ଟଙ୍କା ଦେବ ବୋଲି କହି ଶହେ ଟଙ୍କା ସାଆନ୍ତଙ୍କୁ ବାହାଘର ପାଇଁ ଦେଇଛ । ତମ ଭଲପଣିଆଁ ଜଣାଗଲଣି । ଗୀତାକୁ ପାଣିକ ଠେଲଦେଇ, ମୋତେ ଦାଣ୍ଡରେ ବସାଇ ଏ ଘର ଦଖଲ ନେବ ବୋଲି ଚକ୍ରାନ୍ତ କରିଛ । ସେଥି-ପାଇଁ, ଗୀତାର ବାହାଘର ପାଇଁ ତମେ ଆଜ ଅଲେଡ଼ା ମୁରବି-ପଣ ଦେଖାଇ ବିକଳ ହୋଇ ଧାଇଁଆସିଛ । ପଳା ମୋ ଆଗରୁ । କାଗଜ ଖଣ୍ଡ ଧରି କଅଣ କରୁଛ କର ।

ବିମଳାଭାଇଙ୍କର ପାଟି ଶୁଭିଲ ନାହିଁ ।

—ଚଉଦ୍ଦର—

ଦାମଭାଇଙ୍କ ସତର୍କବାଣୀ ମୋର ମନେ ପଡ଼ିଲା । ବୋଉକୁ ସେ କେତେ ଅନୁରୋଧ, ଅନୁନୟ, ସାବଧାନ କଲେ, ବୋଉ ଶୁଣିଲା ନାହିଁ । ତାଙ୍କ ଉପରେ ଅବିଶ୍ୱାସ କରି ସନ୍ଦେହ କରି ତାଙ୍କୁ ଟାଣ କଥା କହି ଘରୁ ତଡ଼ିଦେଲା । ସେହି ଅଭିମାନରେ ସେ ଆଉ ଆସିନାହାଁନ୍ତି । ଗାଁ ଛାଡ଼ି ଚାଲିଯାଇଛନ୍ତି । ଅଶାନ୍ତିରୁ ଦୂରରେ ରହିବାକୁ । ମୋ ବାହାଘର ପରେ ଫେରିବେ ବୋଲି କହି ଯାଇଛନ୍ତି । ଆଜି ଅବେଳାରେ ଅଡ଼ି ବସିଲେ ଆଉ ଲାଭ ନାହିଁ । ବୋଉର କଥା କେହି ଶୁଣିବେ ନାହିଁ ।

ମୁଁ ଗାଆଁର କଳଙ୍କ ବୋଲି ମତେ ଗାଁରୁ ତଡ଼ିବାକୁ ସମସ୍ତେ ଏକାଠି ହୋଇ ପଣ କରିଛନ୍ତି । ସେମାନେ ବୋଉର ବାଧା ମାନିବେ ନାହିଁ ।

ଦୁର୍ନାମର ମାତ୍ରା ବଢିବ । ମୁଁ ହେବି ହଟହଟା । ବୋଉର ଦିନ ଅଶାନ୍ତିରେ କଟିବ । ଏତେ କଥାରୁ ମିଳିବ କଅଣ ? ଜାଣିକରି ତ ଦାହାଗଞ୍ଜିଆ ଜୀବନ । ଭାଗ୍ୟକୁ ପୋଡ଼ା ଅଙ୍ଗାର କରି ଷଠୀ ଜନ୍ମ ଦେଇଛନ୍ତି । ଯେତେ ନାଚକୁଦ ହେଲେ ନିୟତିର କବଳରୁ ପରିତ୍ରାଣ ମିଳିବ ନାହିଁ ।

ଆଉ ଅଶାନ୍ତି ସୃଷ୍ଟି ହେବ କାହିଁକି, ବର ଫେରିଯିବ କାହିଁକି ? ମୋର ବାହାଘର ହେବ । ସମସ୍ତେ ନିଶ୍ଚିନ୍ତ ହେବେ । ବୋଉ ମୁଣ୍ଡରୁ ବୋଝ ଖସିବ । ବାହାଘର ପରେ ଭବିଷ୍ୟତ କଅଣ ହେବ ସେକଥା କେହି ବୁଝିବେ ନାହିଁ କି ଜାଣିବେ ନାହିଁ । ମୋର ସୁଖଦୁଃଖ ନେଇ ମୁଁ ଜୀବନ କାଟିବି । କାହାରି ପାଖରେ ଗୁହାରି କରିବାକୁ ଆସିବି ନାହିଁ । ଦୁଃଖଯନ୍ତ୍ରଣା ଅସହ୍ୟ ହେଲେ ଯାହା ବୁଦ୍ଧି ଦିଶିବ, କରିବି ।

ଘରଦ୍ୱାର ବୋଉକୁ ଏକୁଟିଆ ପାଇଲେ ସବୁ ବୁଝାଇ କହିବ । କାଠ, ପଥର, ଜଡ଼ାଧାଣ୍ଟ—ମୋ ପକ୍ଷରେ ସବୁ ସମାନ । ବାହାଘର ତ ହେବାର କଥା; ଯାହା ସଙ୍ଗେ ହେଲେ କ୍ଷତି ବା ଲାଭ କିଛି ନାହିଁ । ବର ଫେରିଗଲେ ବିମଳାଭାଇ ଓ ମହାନ୍ତେଜେଠା ବୋଉ ଦେଇଥିବା କାଗଜ ଫେରାଇ ଦେବେ ନାହିଁ କି ଆଉ ଟଙ୍କା ଦେବେ ନାହିଁ । ମହାନ୍ତେଜେଠାଙ୍କର ବିନା ପରାମର୍ଶରେ ବିମଳାଭାଇ ନଟେଇଦାଦାଙ୍କ ନାମ ଧରି ବୋଉକୁ ଠକି ନିଜ ନାମରେ ଘର ଡିହ ବିକ୍ରୀ ହେଲା ବୋଲି ଲେଖାଇ ନେବାକୁ ସାହସ କରି ନ ଥାନ୍ତେ ।

ଚିନ୍ତାନ୍ତଟା ଏଥର ଜଣା ପଡ଼ିଲା । ବାହାଘର ହେଉ କି ନ ହେଉ ଦିନ ଯାଉଛି ନ ପଡୁଣୁ ବିମଳଭାଇ ମହାନ୍ତେଜେଠାଙ୍କ ସାହାଯ୍ୟରେ ଏ ଘରେ ତାଲା ପକାଇବେ । ଆମର ଗତି ହେବ କଅଣ ? କେଉଁଠି ମୁଣ୍ଡ ଗୁଞ୍ଜିବୁ ? କିଏ ଆଶ୍ରା ଦେବ ? ଚଳିବୁ କିପରି ?

ମହାନ୍ତେଜେଠାଙ୍କ ଘରେ ଆଶ୍ରା !

ଧାନକୁଟା, ବାସନ ମଜା, ପୋଇଲୀପଣ । ସତେ, ଶେଷକୁ ଏହା ହିଁ ହେବ ? ଦାମଭାଇଙ୍କର କବଳରେ ପଡ଼ିବି ? ନିଆଶ୍ରା ଦରିଦ୍ର ଆଶ୍ରା ପାଇଲେ ଆଶ୍ରୟଦାତାର ମତ ବିକ୍ରୀତ ହେବ । ବରଂ ମରଣ ଭଲ । ଅତି ସହଜ । ହାତର କଥା ।

ମରଣ ଅପେକ୍ଷା ନିଯୁକ୍ତର ଶରଣ ପଶିବା ଭଲ ।

ନିରୋଳାରେ ବୋଉକୁ ପାଇଲେ ଏକଥା ବୁଝାଇ ଦିଅନ୍ତି । କହନ୍ତି, ବର ଫେରିବ ନାହିଁ

— ପଞ୍ଚସ୍ମୃତି —

ଗାଁଲୋକଙ୍କର ଧମକ ଚମକରେ ବ୍ୟତିବ୍ୟସ୍ତ ହୋଇ ଗୁଇ-ନେଉଟ ବେଳେ ବୋଉ ଦର ପାଗଳୀ ପରି ମୋ ପାଖକୁ ଆସିଲା। ଗାଁ ମାଇପେ ତାକୁ ଘେରି ରହିଥାନ୍ତି । ତାର ସେତେବେଳକାର ରୂପଟି ଆଜି ବି ମୋର ଆଖି ଆଗରେ ଉଭା ହୁଏ । ଅଲରା ବାଳ, କୋରଡ଼ ଆଖି, ଅସଜଡ଼ ଲୁଗାପଟା । ମୁହଁରୁ କଳାପାଣି ନିଗିଡ଼ି ପଡ଼ୁଛି । ଟଳଟଳ ଚାଲୁଛି ।

ସେ ଆସି ମୋତେ କୁଣ୍ଢାଇ ଧରି ମନଇଚ୍ଛା ବାହୁନିବାକୁ ଲାଗିଲା । ଯିଏ ଯେତେ ବୁଝାଇ କଲେ ସେ ମାନିଲା ନାହିଁ । ତାର ସେଇ ବାହୁନା ଭିତରେ ପୂରି ରହିଥିଲା ଗାଁଲୋକଙ୍କ ପ୍ରତି ଅଭିଶାପ । ଜଣ ଜଣ କରି ନାଁ ଧରି ସେ ମନଇଚ୍ଛା ଶୋଧୁଥାଏ । କହୁଥାଏ, ବରି ଫେରିଯାଉ, ସେ ନିଜ ହାତରେ ମୋ ମୁହଁରେ ଜହର ଦେବ । ସବୁ ଜାଣିଶୁଣି ମୋତେ ସେ ଗୋଟାଏ ଗୁଲିଖୋର୍, ଚୋର, ଦରପାଗଳା ଲୋକ ହାତରେ ସମର୍ପି ଦେବ ନାହିଁ ।

ଏସବୁ କାଣ୍ଡ ଦେଖି ମୁଁ ଥକା ହୋଇ ରହିଥାଏ । ମୋର କାନ୍ଦ ବନ୍ଦ ହୋଇଯାଇ ଥାଏ । ତୁଣ୍ଡରୁ କଥା ବାହାରୁ ନଥାଏ । ଖାଲି ବଲବଲ କରି ସ୍ୟା ମୁହଁରୁ ତା ମୁହଁକୁ ଅନାଉଥାଏ କଅଣ କହିବି, କଅଣ କରିବି, କିଛି ସ୍ଥିର କରି ପାରୁ ନ ଥାଏ । ମୋ ଥିବାଘରେ ମାଇପେ ଏପରି ଭିଡ଼ ହୋଇ ରହିଥାନ୍ତି ଯେ ନିଶ୍ୱାସ ମାରିବାକୁ ସୁଦ୍ଧା କଷ୍ଟ ହେଉଥାଏ । ଅଗଣାରେ ସେହିପରି ଲୋକଭିଡ଼ । ଘୋ-ଘାରେ କାନ ଅତଡ଼ା ପଡ଼ୁଥାଏ ।

ମଦନକେଠାଙ୍କର ପାଟି ଶୁଭିଲା ।

ମାଇପେ ଦି ଭାଗ ହୋଇ କଚ୍ଚେଇଗଲେ । ମଦନକେଜେଠା ଘର ଭିତରକୁ ପଶିଆସି ବୁଝାଇ କହିଲେ, ଏ କଅଣ କରୁଛ ଗୀତା ବୋଉ ? ହଁ, ଝିଅ ବାହାଘର ହେଉଛି, ମନରେ ଦୁଃଖ ହେବାର କଥା । ଦୁଃଖ କଲ, କାନ୍ଦିଲ ବୋବାଇଲ, ଆସି ଗୁଡ଼ାଇ ନେଉଛି ତ ହେଲା, ଜ୍ଞାପ ଭେଳକରେ ଲୁଚିଆଁ ଟୋକିଏ ଠକ୍ ଠକ୍ ହେଉଛନ୍ତି । ଉଠ, ଝିଅକୁ ବେଦୀକୁ ନିଅ । ଆଉ ଲୋକହସା କରନାହିଁ । ଝିଅ ମଙ୍ଗୁଳା ହୋଇ ବସିଛି । ଜ୍ଞାପ ଭେଳକରେ କୋଉଁ ପିଲାକୁ ଖୋଳି ମାଡ ଯାଉଛି, ଉଠ— ।

ବୋଉର କାନ୍ଦଣା ବନ୍ଦ ହେଇଗଲା । ଦେଉଡ଼ଶୁର ମାନ୍ୟ ଗୁଡ଼ା ସେ ନିର୍ଭୟ ନିଃସଙ୍କୋଚରେ ଜବାବ୍ ଦେଲା, ଝିଅ ବେଦୀକୁ ଯିବ ନାହିଁ । ଏପରି ଅପାତ୍ରରେ ମୁଁ ମୋର ଝିଅକୁ ଦେବ ନାହିଁ ।

ଆଶ୍ଚର୍ଯ୍ୟ ହେଲାପରି ମଦନକେଜେଠା କହିଲେ, ଅପାତ୍ର ? ହା, ହା, ବାଉଳୋକଙ୍କର ବାଉ କଥା ଶୁଣି ତମର ମନ ଖରାପ ହୋଇଯାଉଛି । ଖଳ ଲୋକେ ଶତ୍ରୁ ଲୋକେ ଦୁର୍ନାମ କରିବେ । ସେଥିରେ କାନ ଦେଉଛ କାହିଁକି ? ଛି, ଉଠ । କାହାର ସ୍ତ୍ରୀ, କୋଉ କୁଳର ବୋହୂ ତମେ, ମିଛ କଥାରେ କାନ ଦେଇ କୁଳର ମାନମହତ୍ତ୍ୱକୁ ଦ'କଡ଼ା କରୁଛ, ଗାଁର ମର୍ଯ୍ୟାଦା ହାନି କରୁଛ ? ବୁଢ଼ା ହେଲି, ଜୀବନର ଦି ପାଖେ ଦି ଗୋଡ଼ ଦେଇ ଗଲୁଣି, ହେଲୁ ପାଇଲା ଦିନୁ ଏ ଗାଁରୁ କେବେ ବର ଫେରିଯିବା କଥା ଶୁଣିନାହିଁ । ଗୁଡ଼ାଇ ନେଉଛିଲା, ଆଉ ଡେରି କର ନାହିଁ ।

ବୋଉ କହିଲା, ମୋତେ ବଳାନ୍ତୁ ନାହିଁ । ମୁଁ ଯଦି ଭୁଲ ବୁଝିଥାଏଁ ମୋର ଭୁଲଟା ମୋତେ ଠିକ୍ । ସାଆନ୍ତେ କର୍ତ୍ତା ହୋଇ ଝିଅ ଦାନ କରିବାକୁ ବସିଛନ୍ତି; ଯେଉଁ ପାତ୍ର ହାତରେ ଝିଅଟିକି ଟେକିଦେବେ, ସାଆନ୍ତଙ୍କ ହାତରୁ କନ୍ୟାଦାନ ନେବାର ଉପଯୁକ୍ତ ପାତ୍ର ତ ସେ ?

ମହନକେଠା ଲୁହ ରଖିଲେ ।

କମଳାଭାଇ ପଛରୁ କହିଉଠିଲେ, ଖୁଡ଼ୀ ଯଦି ଚେଷ୍ଟା କରିବାକୁ ଅଣ୍ଟା ଭିଡ଼ୁନାହାନ୍ତି, ତେବେ ଆଜି ଏତେ ମାଇପେ ଏଠି ଅଛନ୍ତି । ଝିଅକୁ ବେଢ଼କ ଆଣନ୍ତୁ ।

ତାଙ୍କର କଥା ଶୁଣି ରାଗ ତମତମ ହୋଇ ତାଙ୍କର ସ୍ତ୍ରୀ ଗର୍ଜି ଉଠିଲେ, ତମକୁ ଏତେ ଧଇଲେଇ କରିବାକୁ କିଏ କହୁଛି ହୋ ? ମାଇକିନା ଝିଅର ନିଃଶ୍ୱାସ ଯେ ନାଗସାପର ନିଶ୍ୱାସଠୁଁ ବଳି ଖର । ଜାଣି ଜାଣି କିଏ ତା ଦେହରେ ହାତ ଦେବ ? ବିଧବା ଦରିଦ୍ର ସ୍ତ୍ରୀଲୋକକୁ ମିଛ କହି, କେଉଁ ଅଲପାଇସାର ଶିକ୍ଷାରେ ପଢ଼ି, କାଗଜ କରେଇ ନେଇଛ । ଟଙ୍କା କେଉଁଠୁ ଆଣିଲ, ସେ କାଗଜଟା କଅଣ କଲ ମତେ ଆଜଯାଏ କହୁନ । ରଣ୍ଡି ଖଣ୍ଡୀଙ୍କର ଝିଅ ଆମର ଲୋଡ଼ା ନାହିଁ । ତାଙ୍କ କାଗଜ ତାଙ୍କୁ ଫେରାଇ ଦିଅ କହୁଛି, ନୋହିଲେ କଅଣ କରିବ ବୋଲେ ଦେଖିବ । ଗୀତା ପରକା ସୁବର୍ଣ୍ଣପ୍ରତିମା ଝିଅ, ମାଛକୁ ମ କହେ ନାହିଁ, ହଳିଲ ପାଣିକି ହାତ ବଢ଼ାଏ ନାହିଁ, ବୁଦ୍ଧିମନ୍ତ, ସବୁ ଗୁଣରେ ବିଚକ୍ଷଣ ହେଲେ ବି ସିଏ ସର୍ବସହଣୀ, ଯେତେ ଛୁଗୁଲେଇ କରି କହିଲେବି ସିଏ ଓଲଟି ପଦେ ଜବାବ୍ ଦିଏ ନାହିଁ, ତାକୁ ଯେଉଁମାନେ ଫାଶୀ ଖୁଣ୍ଟରେ ଝୁଲାଇ ପୁଣ୍ୟ ଅର୍ଜିବାକୁ ଆଗେଇଛନ୍ତି ସେମାନେ ଯାହା କରିବାର କରନ୍ତୁ । ତମେ ପାଟି ଫିଟାଅ ନାହିଁ କହୁଛି । ତମ ପାପର ଭାଗୀ ହେବାକୁ ମୁଁ କେବେ ଏ ପୁରରେ ରହିବି ନାହିଁ ।

ଆଶ୍ଚର୍ଯ୍ୟ ହୋଇ କମଳାଭାଇର ସ୍ତ୍ରୀଙ୍କ ଆଡ଼କୁ ସମସ୍ତେ କଣେଇଁ ଚାହିଁଲେ । ସତେ କି ତାର ମିଟି ମିଟି ଆଖିରୁ ନିଆଁ ଝରୁଛି । ଉତ୍ତର ନ ଦେଇ କମଳାଭାଇ ପଳେଇ ଗଲେ ।

ମହନକେଠା ଭାବିଚନ୍ତି କହିଲେ, ତେବେ ଦାମବୋଉ, ତମେ ଗୀତାକୁ ନେଇଆସ । ଯେଉଁମାନେ ବାହାଘରରେ ଯୋଗ

ନ ହେବେ, ସେମାନେ ତଫାତ୍ ହୋଇଯାଆନ୍ତୁ । ସୁଆଙ୍ଗ ନୁହେଁ ଯେ ସମସ୍ତେ ଦେଖିବାକୁ ହାମୁଡ଼େଇ ପଡ଼ିବେ ।

ବଡ଼ମା ଉତ୍ତର ଦେବା ଆଗରୁ ବୋଉ ଗର୍ଜିଉଠିଥିଲେ । କହିଲେ, ସତେ ଏତେ ସାହସ କାହାର ଅଛି ? ମୁଁ ବଞ୍ଚିଥାଉଣୁ ମୋ ଛାତି ଉପରୁ ମୋର ଝିଅକୁ ଟାଣିନେବ କିଏ ? ତାର ବାପ ନାହିଁ ବୋଲି ଯେଉଁମାନେ ଏପରି ଭାବୁଛନ୍ତି, ଆସନ୍ତୁ ଦେଖି ସେମାନଙ୍କର କେତେ ସାହସ ।

ମତେ ସବୁ ସ୍ୱପ୍ନପରି ଲାଗୁଥାଏ । ଚାରିପାଖ ଅନ୍ଧାର ଦେଖାଯାଉଥାଏ । ଏତେ ବାଦାନୁବାଦ ତର୍କ ବିତର୍କ ଶୁଣି ମୁଁ କାନ୍ଦି କାନ୍ଦି କହିଉଠିଲି, ଆଉ ତୁ ବାଧା ଦେ ନା ବୋଉ, ମୋର ଭାଗ୍ୟ ମୋତେ ଟାଣିନେଉଛି । ବର ଫେରିବ କାହିଁକି ?

ସମସ୍ତେ ତୁନି ହୋଇ ମୋର ଆଡ଼କୁ ଅନାଇଁଲେ ।

ବୋଉ ଥକ୍କା ହୋଇ ଗଲାଁପରି । ଆଖି ଛଳ ଛଳ କରି ମୋ ଓଠରେ ହାତ ଦେଇ ଭଙ୍ଗାସ୍ୱରରେ ପଚାରିଲେ, ତୋ ମନରେ ଅଶାନ୍ତି ନାହିଁ ତ ମା ?

ମୁଣ୍ଡ ହଲାଇ କହିଲି, ନା—ଆଁ ।

ମହାନଜେଠା କହିଉଠିଲେ, ଦେଖିଲ ଦେଖିଲ, ଗୀତାର କେତେ ବୁଦ୍ଧି ! ମା ମୋର ଭଲ ପିଲା । ଭଲମନ୍ଦ ସବୁ ବୁଝିପାରେ । ଆଉ ଡେରି କରନା । ଝିଅକୁ ବେଦିକୁ ଆଣ । ବରଯାତ୍ରୀ ବ୍ୟସ୍ତ ହେଲେଣି । ଶୁଭକାମ ଶୀଘ୍ର ସରିଲେ ସବୁ ମଙ୍ଗଳ ।

ନିଜ ମୁହଁରେ ମୁଁ ମୋର ମରଣ ଆଦେଶ ଶୁଣାଇ ଦେଇଛି । ଆଉ ଯେଉଁସବୁ କର୍ମ ହେବ ସେ ସବୁ ତ ଲୌକିକତାର ପ୍ରକରଣ—ବେଦି, ହାତଗଣ୍ଠି, ବିଦାବିଦ । ବାଣଆଡ଼ର ଆମ୍ବଗଛ, ନଈକୂଳ ଡାହି, ଗ୍ରୋଷ୍ଟ ଖଣ୍ଡିଏ ଦଉଡ଼ି । ହଁ, ବିଦାବିଦ !

—ଛଅସ୍ତର—

**ଲୋ**କଗହଳ ଠେଲି କିଏ ଜଣେ ମୋ ପାଖକୁ ଆସି ଥରିଲା ସ୍ୱରରେ କହିଲେ, ପାଗଳ, କାହା ଉପରେ ଅଭିମାନ କରି ନିଜର ସର୍ବନାଶ କରିବାକୁ ଯାଉଛୁ ?

ମୁଣ୍ଡଟେକି ଗୁହିଁଲି । ଦୁନିଆଁରେ ଯେଉଁ ଜଣକ ମୋ ଆଖି ଲୁହର ଅର୍ଥ ବୁଝନ୍ତି ସେଇ ମୋର ଦାମଭାଇ, ମୋ ଆଗରେ ଠିଆ ହୋଇଛନ୍ତି । ଦୁଇ ଆଖିରୁ ଦୁଇ ଧାର ଲୁହ ଗଡ଼ିପଡ଼ୁଛି ।

ଭୁଲିଗଲି ଏତେ ଲୋକଙ୍କର ଉପସ୍ଥିତି । ଭୁଲିଗଲି ନିଜକୁ । ଅଧୀର ହୋଇ ତାଙ୍କର ଗୋଡ଼ତଳେ ମୁଣ୍ଡ ଲଗାଇ ଦୁଇଗୋଡ଼ ଯାକୁଡ଼ି ଧରିଲି । ଆକୁଳ କଣ୍ଠରେ କହିଉଠିଲି, ଭାଇ, ଭାଇ, ତମେ ଆଜି କାହିଁକି ଆସିଲ ? ତମେ ଯାଅ, ତମେ ଗୁଲିଯାଅ ଏଠୁ । ତମର ଗେହ୍ଲା ଭଉଣୀ, ତମର ଟିକି ଭଉଣୀ, ପ୍ରାଣକପାଳୀ ଗୀତାକୁ—

ଆଉ କହିପାରିଲି ନାହିଁ । ତାଙ୍କର ଦୁଇଗୋଡ଼କୁ ଆହୁରି ଜୋର୍‌ରେ ଗୁପି ଧରିଲି । ଭେ ଭେ ହୋଇ କାନ୍ଦିଉଠିଲି । ସେତେବେଳେ ମୋର ଭାବିବାର ସବୁ ଶକ୍ତି ହଜି ଯାଇଥିଲା, ତିନିପୁର ଅନ୍ଧାର ଦିଶୁଥିଲା । ଏକ ଆଖିରେ ଗୁହିଁ ରହିଥିଲି ମୋର ଦାମଭାଇର ଲୁହଝରା ମୁହଁକୁ ।

ମହନ୍ତଜେଠା ଗର୍ଜି ଉଠିଲେ, ତୁ ଯା ଦାମ, ତୁ ଏଠୁ ଗୁଲିଯା ।

ଦାମଭାଇ ଆଖିରୁ ଲୁହ ପୋଛିଲେ । କୋହମିଶା ଅସ୍ଥିର ସ୍ୱରରେ କହିଉଠିଲେ, ସୁଆଙ୍ଗ ବେଶି ଦୂର ଆଗେଇ ଗଲାଣି । ଏଥର ଭାଙ୍ଗ । ଗୋଟିଏ ସରଳ, ନିରୀହ, ନିଷ୍କପଟ ଝିଅର ବାର ଦୁର୍ନାମ ମିଛରେ ରଟାଇ ମନ ସନ୍ତୋଷ ହେଲା ନାହିଁ, ଯେ ଆହୁରି

ତାର ସର୍ବନାଶ କରିବାକୁ ବସିଛ ? ଜାଣିଛ କି ତାର କେହି ନାହିଁ ? ତମେସବୁ ଭୁଲ୍ ବୁଝିଛ । ଗୀତାର ବଡ଼ ଭାଇ ଫେରି-ଆସିଛି । ଗୀତାର ବାହାଘର ସେ କରିବ । ସଂସାରରେ ଗୀତା ଲାଗି ପାତ୍ରର ଅଭାବ ହେବେ ନାହିଁ । ମଙ୍ଗୁଳା ଝିଅ ପାଇଁ ଆଜି ମୁଁ ତା ଉପଯୁକ୍ତ ବର ଖୋଜିଆଣିଛି । ନ ଆଣିବାଯାଏ ଏ ଗାଁକୁ ଫେରିବି ନାହିଁ । ଗୁଲିଆ ଜଟିଆ ବାହୁଡ଼ିଯାଉ । ତୁମେସବୁ ବି ଯାଇପାର । ଗୀତାର ଭାଇ ଦାମ ଆଜି ପ୍ରତିଜ୍ଞା କରି ଆସିଛି, ସେ ଆଜିଠାରୁ ତ୍ୟାଜ୍ୟ ପୁତ୍ର ହେବ । ଆଉ କଅଣ ତୁମେ ଚାହୁଁଛ ?

ଦାମଭାଇ ମୋର ଥରିଲା ହାତ ଧରି ଉଠାଇଲେ । ଆଖି ଛଳ ଛଳ କରି କହିଲେ, ଭାଇ ତୋର ଫେରି ଆସିଛି ଗୀତା, ତୁନି ହ । ଅଭିମାନ କରି ଚାଲି ଯାଇଥିଲି । ଦୂରରେ ଥାଇ ଏଇସବୁ ଦୃଶ୍ୟ ଅନୁମାନ କରୁଥିଲି । ସହିପାରିଲି ନାହିଁ । ରହି-ପାରିଲି ନାହିଁ । ଯେଉଁ ଟିକି ଭଉଣୀ, ଛେଲବେଳର ସୁନା ଭଉଣୀକୁ ପିଠିରେ କାଖରେ ଧରି ସ୍ନେହ କରୁଥିଲି, ମୋ ପାଇଁ ଯେଉଁ ନିର୍ଦ୍ଦୋଷ, ନିଷ୍କଳଙ୍କ ଭଉଣୀଟି ନିନ୍ଦା, ଅପବାଦ, ଅପମାନର କୁହାଟ ଶୁଣି ନୀରବରେ ଲୁହ ଢାଳୁଛି, ବଞ୍ଚିଥାଉଁଣୁ ମୁଁ ତାକୁ ହାଣ ମୁହଁକୁ ଯିବାର ଦେଖିପାରିବି ନାହିଁ ।

ଆଉ କଅଣ କହିବାକୁ ବସିଥିଲେ, କହିପାରିଲେ ନାହିଁ । ଦୁଇ ହାତରେ ମୁହଁ ଲୁଚାଇ ପିଲାଙ୍କ ପରି ସେ କାନ୍ଦିବାକୁ ଲାଗିଲେ । ଗୋଟିଏ ଅଚଳ କାଠ ପିତୁଳା ପରି ମୁଁ ଠିଆ ହୋଇ ରହିଲି । ମୋର କାନ୍ଦଣା ବନ୍ଦ ହୋଇଗଲା ।

ଦାମଭାଇ ପ୍ରକୃତିସ୍ଥ ହେଲେ । ଆଖିରୁ ଲୁହ ପୋଛିଲେ ।

ମଦନଜେଠା ପାଖକୁ ଆସି କହିଲେ, 'ଆରେ ଦାମ, ତୁ ତୋର ବାଇଆ ବୁଦ୍ଧି ଛାଡ଼ । ଶୁଭ କର୍ମରେ ବାଧା ଦେବା ଭଲ ନୁହେଁ ।

ଦାମଭାଇ ଉତ୍ତେଜିତ ହୋଇ କହିଲେ, ପିଲାଟି ଦିନରୁ ବହୁତ ଉପଦେଶ ଆପଣ ଶୁଣାଇଛନ୍ତି, କେବେ ଅମାନ୍ୟ କରିନାହିଁ । ମୁଁ ମଣିଷ ହୋଇଛି କି ଅମଣିଷ ହୋଇଛି, ଲୋକେ ତାହା ବିଗ୍ଭର କରିବେ । ପରିଚିଅର ଜୀବନକୁ ହାତରେ ଧରି ଖେଳିବାର ଯେଉଁ ଚକ୍ରାନ୍ତ ଓ ସେଥିପାଇଁ ଯେଉଁ ଉପଦେଶ ଆପଣ ବାଢ଼ିବେ ସେତିକି ନ ମାନିବାର ଦୋଷ ମୁଁ ଗ୍ରହଣ କରୁଛି । ଆପଣ ମୋତେ ତ୍ୟାଜ୍ୟପୁତ୍ର କରିବେ ତ କରନ୍ତୁ । ମୋର ପିଣ୍ଡରେ ପ୍ରାଣ ଥିବାଯାଏ ଗୋଟାଏ ଚୋର, ଗୁଳିଖୋର, ମୂର୍ଖ, ଅଧାପାଗଳ, ରୋଗଣା ;ଦରବୁଢ଼ା ଲୋକ ଜଣିଆ ସାଙ୍ଗରେ ମୋର ଏଇ ଗେଲବସର ଝିଅ ଭଉଣୀର ବାହାଘର ମୁଁ କଦାପି କରାଇ ଦେବି ନାହିଁ । ପ୍ରତି ମୁହୂର୍ତ୍ତରେ ଖେଳଦାଦିର ଆତ୍ମା ମୋର ମନ ଭିତରେ ବାହୁନୁଛି ବାପା ! ଗୀତା ପାଇଁ । ସହରରୁ ବର ଖୋଜି ଆଣିବି । ବରକୁ ବାହୁଡ଼ାଇ ଦିଅନ୍ତୁ । ଆପଣମାନେ ବି ଚାଲିଯାଆନ୍ତୁ । ଗୀତାର ବଡ଼ ଭାଇ ମୁଁ, ମୋ କାମ ମତେ କରିବାକୁ ଛାଡ଼ିଦିଅନ୍ତୁ ।

ପୁଣି ଦାମଭାଇଙ୍କ ଆଖିରୁ ଲୁହଧାର ଗଡ଼ିଆସିଲା ।

—ସତସ୍ତର—

ବର ଫେରିଗଲା ।

ଗାଁ ଲୋକେ ମଧ୍ୟ ଫେରିଗଲେ । ପଛରେ ସେମାନେ କିଏ କେତେ ସମାଲୋଚନା କରିଥିବେ କି ଦୁର୍ନାମ ରଟାଇଥିବେ ଶୁଣିବାକୁ ମୋର ସୁବିଧା ହୋଇନାହିଁ ।

ଚହଳ ଚହଳ ପାଟିତୁଣ୍ଡ ସବୁ ବନ୍ଦ ହୋଇଗଲା । କିପରି ଖରାପ ଲାଗିଲା ।

କଅଁଳ ଆଲୁଅ ଛିଞ୍ଚିହୋଇଥିଲା ଦୁନିଆ ସାରା । କିନ୍ତୁ ସେ ଆଲୁଅରେ ସତେ କି ସରସତା ନାହିଁ, ସ୍ନିଗ୍ଧତା ନାହିଁ, କୋମଳତା ନାହିଁ । ସେଇ ମୌନ ଶୁଭ୍ର ଆଲୁଅ ଭିତରୁ ଝରି ପଡୁଥିଲା ବିଷାଦ, କାରୁଣ୍ୟର ସଜଳ ଭାବ ।

ସଞ୍ଜ ପବନ ବହି ଆସିଲା ସିରି ସିରି । ଥରି ଥରି ଜାଗି-ଉଠିଲା ପ୍ରକୃତି, ଆଉ ବାହାରର ସେଇ ଜାଗରଣର ପ୍ରଭାବ ମୋର ଚିତ୍ତ ଭିତରେ ଗୁମୁରାଇ ଦେଲା ବ୍ୟଥାର ରାଗିଣୀ । କାହିଁକି ସେ ବିଷାଦ ଜାଣିପାରିଲି ନାହିଁ ।

ମଙ୍ଗଳା କନ୍ୟା ମୁଁ, ଅଧା ଅନ୍ଧାର ଘରେ ବସିଛି, ମୌନ ହୋଇ । ପାଖରେ ବସିଛନ୍ତି ଦାମଭାଇଙ୍କ ସ୍ତ୍ରୀ । କୋଳରେ ତାଙ୍କର ପିଲାଟି ଶୋଇପଡ଼ିଛି ।

ରାଧା ଆଲୁଅ ନେଇ ଆସିଲା । ନୂଆବୋହୂ ମୁଣ୍ଡ ଟେକି ତା ଆଡ଼କୁ ଚାହିଁଲେ । ପଚାରିଲେ, କେତେବେଳେ ସେ ଫେରିବେ ଲୋ, ରାଧା ?

ଫେରୁଥିବେ । ବେଶି ବାଟ ନୁହେଁ ଯେ ।

ବୋଉ ?

ଗୀତାବୋଉଙ୍କ ପାଖରେ ଦାଣ୍ଡରେ ବସିଛନ୍ତି । ରାମଲା-ଭରସା କଅଣ କହୁଛି, ଶୁଣୁଛନ୍ତି ।

ନୂଆବୋହୂ କହିଲେ, ପିଲା ଶୋଇପଡ଼ିଲାଣି ।

ରାଧା କହିଲା, ତାକୁ ସେଇଠି ଶୁଆଇ ଦେଉ ନା ।

ସେ ଚାଲିଗଲା । ନୂଆବୋହୂ ପିଲାଟିକୁ ତଳେ ଶୁଆଇ ଦେଉଥିଲେ, ତାଙ୍କ ହାତରୁ ଆଣି ମୋଓର କୋଳରେ ଶୁଆଇଲି ।

ମନରେ ପ୍ରଶ୍ନ ଉଠୁଥାଏ, ଦାମଭାଇ ଗଲେ କୁଆଡ଼େ ? ଘର ଫେରିସିବା ପରେ ଏମାନଙ୍କ ସଙ୍ଗେ ଗୁପ୍ତରେ ସେ କଅଣ ପରାମର୍ଶ କଲେ ? ତା ପରେ ସଞ୍ଜଆଗରୁ ବାହାରିଗଲେ କାହିଁକି ?

କାହାରିକୁ କିଛି ପଚାରିବାକୁ ସାହସ ହେଉ ନ ଥାଏ ।

—ଅଠସ୍ତର—

ଘଣ୍ଟାକ ପରେ ବୋଉ, ବଡ଼ମା ଓ କମଳାବାଇଙ୍କ ସ୍ତ୍ରୀ ଫେରଆସିଲେ । ପିଣ୍ଡାରେ ବସିଲେ ।

ବଡ଼ମା କହିଲେ, ଏତେ ଡେରି କରୁଛୁ, ସେମାନେ କଅଣ ମଙ୍ଗିଲେ ନାହିଁ ଗୀତାବୋଉ ? କାଲେ ଆଉ କେଉଁଠି ଠିକ୍ କରି-ନେଇଥିବେ । ମଙ୍ଗୁଳା ବର, ଜମିଦାର ପୁଅ, ବେଶି ପାଠ ପଢ଼ିଛି, ବଡ଼ ଚାକିରି କରିଛି । ଦେବା ନେବା କଥା ତୁଟିଲା ନାହିଁ କି ? ତାଙ୍କୁ ମୁଁ କହିଦେଇଥିଲି, ଯାହା ସେ ମାଗିବେ, ନାହିଁ କରିବୁ ନାହିଁ । ମନଇଚ୍ଛା ଦେଇ ପାଞ୍ଚ ଝିଅ ପରଘରକୁ ପଠାଇଲି । ଆଉ ଝିଅଟିଏ ଥିଲେ ତ ପଚ୍ଛାଇ ନ ଥାନ୍ତି । ସୁନା କଣ୍ଢେଇ ଗୀତା ପରି ଝିଅଟିଏ ପାଇଛୁ, ହଟିବ ନାହିଁ ଲେ—

ବୋଉ କହିଲା, ଅପା !

କମଳାବାଇର ସ୍ତ୍ରୀ ରହି ରହି କହିଲେ, ଯଦି ଆଉ କେଉଁଠି ଠିକ୍ କରି ନେଇଥାନ୍ତି ତ—

ବୋଉ କହିଲା, ଏଥିକି ମୁଁ ଡରନାହିଁ ଗୋ । ଯେତେବେଳେ ବର ଫେରାଇ ଦେଇଛୁ, ଭାଗ୍ୟରେ ଯାହା ଥିବ ହେବ । କୂଅ ପୋଖରୀ ତ ଅଛି । ଦାଉଡ଼ି ଦି ଖଣ୍ଡ କି ଜହର ଟିକେ ପାଇଁ କାହା ପାଖେ ହାତ ପାତିବାକୁ ପଡ଼ିବ ନାହିଁ ।

ବଡ଼ମା କହିଲେ, ଏପରି ଭାବୁଛୁ କାହିଁକି ଗୀତାବୋଉ ? ମଙ୍ଗୁଳା ଝିଅ, ଯେମିତି ହେଲେ ତ ଯେଉଁଠି ବାହା ହେବ । ପାଞ୍ଚ ପାଞ୍ଚଟା ଝିଅ ଜନ୍ମ କରିଥିଲି, ଅର୍ଦ୍ଦଳ ସହିଥିଲି । ସେମାନଙ୍କୁ ପର ଘରକୁ ବିଦା କରି ବୋହୂ ବଳକଟେ ଆଣିଲି ଯେ ମୋ କୋଳର କେଉଁ କଣରେ ସେ ଲୁଚିଯାଉଛି । ଦି ଆଖି ମୋର ପୂର୍ଣ୍ଣ ହେଉ

ନାହିଁ । ଗୀତାକୁ ମୋ ଘରକୁ ନେଲେ, ଦ ଝିଅଙ୍କର ଅର୍ଦ୍ଧେକ କଅଣ ସହିପାରିବ ନାହିଁ ?

ନୂଆବୋହୂ ମୋ ଓଠରେ ହାତ ମାରି ହସି ହସି ଗୁନ ଗୁନ କହିଲେ, କେଡ଼େ ଭଲ ହେବ ଗୀତାଦେଈ, ତୁମେ ମୋ ପାଖକୁ ଗଲେ ଏଇ ପିଲଙ୍କର ଜଞ୍ଜାଳରୁ ମୁଁ ରକ୍ଷା ପାଇବି ।

ନଆବୋହୂଙ୍କର କଥା ଶୁଣି ମୁଁ ମୁଣ୍ଡ ନୋଇଁଲି । ଲାଜରେ ମୋର ମୁହଁ ଜଳିଗଲା । କହିଲି, ଛି ନୂଆବୋହୂ, ଅମିତି କଥା, ପାପ କଥା ତୁଣ୍ଡକୁ ଆଣନା !

କହିଲେ, ଧନେ ସେ ଏଇଆ ଚାହିଁଥିଲେ...ତ ।

କହିଲି, ପୁରୁଷ ପିଲା, ଯାହାକୁ ସ୍ନେହ ଶରଧା କରେ, ତାଆର ସୁଖ ଆନନ୍ଦ ପାଇଁ ନ ବୁଝି ନ ସୁଝି, ବାଇଆଙ୍କ ପରି ଯାହା ତୁଣ୍ଡକୁ ଆସିଲା କହିଦେଲେ । ଏଥିପାଇଁ ଭାଇଙ୍କି ମୁଁ ଶାସନା କରିଥିଲି । ତୁଣ୍ଡରୁ ବାହାରିଲା କଥା ପାଇଁ ଦୁର୍ନାମ ରଟିଲା । ସେଥିକି ମୁଁ ଦାୟୀ ନୁହେଁ କି ମୋ ଭାଇ ଦାୟୀ ନୁହନ୍ତି । ତାଙ୍କର ମୋ ପ୍ରତି ଥିବା ସ୍ନେହ ହିଁ ଦାୟୀ । ନୂଆବୋହୂ, ତମ ଗୋଡ଼ରେ କଣ୍ଟା ହେବା ଆଗରୁ ମୋତେ ଜହର ଟିକେ ମିଳିବ ଯେ ।

ମୋ ମୁଣ୍ଡଟିକୁ ତାଙ୍କ ଛାତିକୁ ଆଉଜାଇ ନୂଆବୋହୂ ଗେଲ କଲେ । କହିଲେ, ଏହା କରାଇ ଦେଇ ନାହିଁ ଗୀତା, ଏହି ଛାତି ଉପରକୁ ଏମିତି ଏ ମୁହଁଟିକୁ ଟାଣିନେବି ।

ବାହାରୁ କମଳାଭାଇଙ୍କ ସ୍ତ୍ରୀ କହିଲେ, ଏମିତି କଅଣ ହବ ? କଥାକୁ ଚିନା କହିଲ । ଦାମ ଫେର ଆସନ୍ତୁ । ସେଠି ଯଦି ସୁବିଧା ନ ହେଲା ପାଦଟିଏ ତ ହାତରେ ଅଛି...

ରାଧା ପଚାରିଲା, କାହା କଥା କହୁଛ ?

ବମନାଭଇର ସ୍ତ୍ରୀ କହିଲେ, ଆମ ଅମୁ ବିଷୟରେ କହୁଛ ।
ଅଜୁ ପାଇଁ ପାଣି ଠିକ୍ ହୋଇସାରିଛି । ଦିନ ଦଶଟା ପରେ ବାହା ।
ଏକା ଥିରେ ଅଜୁ ଅମୁଙ୍କର କମିଟ୍ୟ ଉଠାଇଦେବା ।

କେହି ଉତ୍ତର ଦେଲେ ନାହିଁ ।

—ଅଣାଅଣୀ—

ଘଣ୍ଟାକ ପରେ ଦାମଭାଇ ଫେରିଲେ । ଖଞ୍ଜା ଭିତରେ ଗୋଡ଼ ଦେଉଁଣୁ ପାଟି କରି କହିଉଠିଲେ, ବୋଉ, ସବୁ ଠିକ୍ ହୋଇଗଲା । ବର ଆସୁଛି ।

ବଡ଼ମା ବ୍ୟଗ୍ର ହୋଇ ପଚାରିଲେ, ଏତେ ଜଲଦି ହେଲା କାହାଁକ ବାପ ?

ଦାମଭାଇ ପିଣ୍ଡା ଉପରକୁ ଅସି କହିଲେ, କହୁଛି, ଟିକଏ ରହ ।

ନୂଆବୋହୂ ଗେଲରେ ମୋ ନାକକୁ ଚିପି ଦେଇ ଦ୍ୱାରବନ୍ଧ ପାଖକୁ ଉଠିଗଲେ । କେଜାଣି କାହିଁକି ମୋର ପଞ୍ଜରା ଥରାଇ ଦୀର୍ଘଶ୍ୱାସ ପଦାକୁ ଛୁଟି ଅସିଲା । ଦେହ ବରଫପାଣି ପରି ଥରିଲା ।

ଦାମଭାଇ କହିଲେ, ବନମାଳୀପୁର ଜମିଦାର ଉଛବବାବୁ । ତାଙ୍କର ବଡ଼ ପୁଅ ମାଧବାନନ୍ଦ । ବି. ଏ. ପାସ କରି ସବ୍‌ଡେପୋଟି ହୋଇଛନ୍ତି । ରୂପ ଯେପରି ସୁନ୍ଦର, ସ୍ୱାସ୍ଥ୍ୟ ସେହିପରି ସୁନ୍ଦର । ଖାଲି ନାକତଳେ ଦାଢ଼ି ପରିକା ଟିକଏ କଣ । ହରଅନ୍ତା ଭଗୀରଥି ବାବୁଙ୍କ ଝିଅ ବିଷୟରେ ସମ୍ବନ୍ଧ ସ୍ଥିର ହୋଇଥିଲା । ବୋହୂ ସୁନ୍ଦର ବୋଲି ଆଗରୁ ଶୁଣିଥିଲେ ।

ବର ଅସିଲା । ଗାଁରେ ଭଗୀରଥିଙ୍କ ଶତ୍ରୁପକ୍ଷ ବାରକଥା କହିଲେ । ଝିଅ କୁଆଡ଼େ କାଳୀ, ବସନ୍ତମୁହାଁ, କଠଉପାଘା । ଏ ସବୁ ଶୁଣି ମାଧବ ଅଡ଼ି ବସିଲେ । ଉଛବବାବୁ କହିଲେ, ଝିଅକୁ

ସେ ନିଜେ ନ ଦେଖିଲେ ଫେରିଯିବେ ପଛେ ବାହାଘର କରିବେ ନାହିଁ ।

କେତେ ଘଣ୍ଟାଟାକଟା ହେଲା । ସେମାନେ ଝିଅକୁ ଦେଖାଇବାକୁ ମଙ୍ଗିଲେ ନାହିଁ । ବର ଫେରି ଆସିଲା ।

ଉଚ୍ଛବବାବୁ କନ୍ୟାପାତ୍ର ଖୋଜିବାକୁ ପାଞ୍ଚଆଠଟି ଲୋକ ପଠାଇଥିଲେ । ଧନ ଦଉଲତ ସେମାନେ ଖୋଜୁ ନାହାନ୍ତି । କେଉଁଥିରେ ଭଗବାନ ତାଙ୍କୁ ଊଣା କରିଛନ୍ତି ଯେ ଧନ ଦଉଲତ ଖୋଜିବସିବେ ? ଉଚ୍ଛବବାବୁ ସୁନ୍ଦର, ଗୁଣର ବୋହୂଟିଏ ଖୋଜୁଛନ୍ତି । ଗୀତା ପାଇଁ ପ୍ରସ୍ତାବ ପକାଇଲି । ପଦପଦ କରି ସବୁ ସତକଥା କହିଲି ଲୋ ବୋଉ,ଖାଇଲି,କିଛି ଲୁଚାଇବ ନାହିଁ । ଇଚ୍ଛା ହେଲେ ମଙ୍ଗିବେ, ନୋହିଲେ ନାହିଁ । ସେ ମଙ୍ଗି ନ ଥିଲେ କେଉଁଠି ହେଲେ ମୂଳଆମୂର୍ଖ ହେଉପଛେ, ଭଲ ପିଲାଟିଏ ଖୋଜାଥାଆନ୍ତି । ଅତି ଭଲ ଲୋକ ଉଚ୍ଛବବାବୁ, ମାଧବ ବି ସେମିତି । ମୋ କଥା ଶୁଣି ସେହିଁ ମଙ୍ଗିଲେ ତେବେ······ ।

ବଡ଼ମା ପଚାରିଲେ, ଝିଅ ନ ଦେଖି ମଙ୍ଗିଲେ କେମିତି ?

ଦାମଭାଇ କହିଲେ, ସେଇଥିପାଇଁ ତ ଏତେ ଡେରି ହେଲା । ମୁଁ କହିଲି, ଜଣେ କାହିଁକି, ଆପଣମାନେ ସମସ୍ତେ ଚାଲନ୍ତୁ ଝିଅକୁ ଦେଖିବେ । ଝିଅ ଯଦି ମନକୁ ନ ଆସେ ବାହାଘର ନ କରିବେ ।

ବୋଉ କହିଲା, ତେବେ ତ ପ୍ରସ୍ତାବଟା ପକ୍କା ହୋଇନାହିଁ ।

ଦାମଭାଇ କହିଲେ, ତୁମେ ଚିନ୍ତା କରନା ଖଡ଼ୀ, ଗୀତାକୁ ଦେଖିଲେ ସ୍ୱର୍ଗର ଇନ୍ଦ୍ର ବି ନାହିଁ କରିପାରିବେ ନାହିଁ । ସତେ ମ ଖୁଡ଼ୀ, ତମ ସିଙ୍ଘାଣିନାକୀ ଅବରଜିଆ ଝିଅଟା ପାଇଁ ଚନ୍ଦ୍ରଟାଏ ଖୋଜୁ ଖୋଜୁ ଇନ୍ଦ୍ରଟାଏ ମିଳିଯିବ । ତମେ ନିଶ୍ଚିନ୍ତ ରହ ।

ଭେଳଦାଦା ସେପୁରରେ ଆଶୀର୍ବାଦ କରୁଛନ୍ତି । ତାଙ୍କର ପୁଣ୍ୟର ଫଳ ଅବଶ୍ୟ ଫଳବ । ଗୀତାକୁ ସତ୍ପାତ୍ରରେ ଦେବାର ଆଶା ପୂର୍ଣ୍ଣ ହେବ ଖୁଡ଼ୀ, ଭଗବାନ ଅନ୍ଧ ନୁହନ୍ତି । ମନ ଦେଖି ସେ ଫଳ ଦିଅନ୍ତି । ବଡ଼ ଖେଳୁଆଡ଼ ସେ, ଯାହାକୁ ସେ ବେଶି ଭଲ ପାଆନ୍ତି ତାଆରି ସଙ୍ଗେ ଟିକେ ଖେଳବ ଲଗାନ୍ତି । ଗୀତା ପଢ଼ୁ, ତାଙ୍କ ସ୍ନେହର ଝିଅ । ମୁଁ ଆସେ ।

ସେ ଚାଲିଗଲେ ।

—ଅଶୀ—

ରାତି ଦି ଘଡ଼ିକି ବର ଆସିଲ ।

ପୁରୋହିତ ମୋର ଥରିଲା ହାତଟି ଅପରିଚିତ ମାଧବ-ବାବୁଙ୍କର ହାତ ଉପରେ ରଖିଲେ । ଦେହରେ ଅଜଣା ସ୍ପନ୍ଦନ ଖେଳିଗଲା । ମନର କେଉଁ ଅନ୍ଧାର କୋଣରେ ବାହୁନି ଉଠିଲା ଅଜଣା ଦେବତା । ଆଶାର ଦରମଲା ଆଲୁଅ ଥରି ଉଠିଲା । ଦୁର୍ବଳ ସ୍ମୃତି ସ୍ୱପ୍ନର ଧବଳେଶ୍ୱର ତୋର ଅରମା ଭିତରକୁ ଛୁଟିଗଲା, ଯେଉଁଠି ପ୍ରବୋଧବାବୁ ମୋର ଚକ୍‌ବୋଳା ପାଦଟିକୁ ହାତ ପାପୁଲି ଉପରେ ରଖିଥିଲେ ।

ଲିଭିଗଲା ପୁରୁଣା ଆଶାର କ୍ଷୀଣ ଆଲୁଅ ଚିରଦିନ ଲାଗି । ମନଗହନର ଅନ୍ଧାର ଭିତରେ କେତେଦିନର ବଡ଼ ଶ୍ରେଷ୍ଠ କେତେ ସ୍ମୃତି ହଜାଇଦେଲି ସତ । ସେହି ଅସୀମ ଅନ୍ଧାରର ଗୋଟିଏ କୋଣରେ ଉଜଳି ଉଠିଲା ନୂଆ ତାରାଟିଏ, ଜୀବନର ଧ୍ରୁବତାରା, ଯାହାର ଆଡ଼କୁ ଚିରଦିନ ମତେ ଗୃହିଁ ରହିବାକୁ ହେବ ଏକ ଆଖିରେ, ଯାହାର ପାଦତଳେ ଦେହ, ମନ ଓ ଜୀବନ ନିଃଶେଷ କରି ଅଜାଡ଼ି ଦେବି ।

ସେହି ମୋର ସ୍ୱାମୀ, ସେହି ମୋର ଦେବତା ।

ଲୁହର ବାଦଲ ଭିତରେ ଆଗକୁ ଗୃହିଁଲି । ବେଭ ବାଉଁଶକୁ ଆଉଜି ଠିଆ ହୋଇଛନ୍ତି ଦାମଭାଇ । ଝାଉଁଳା ମୁହଁର ମଉଳା ଆଖିରେ ଛଳ ଛଳ ଲୁହ ।

ମହାନଜେଠା କନ୍ୟାଦାନ କରୁଛନ୍ତି ।

—ଏକାଅଶୀ—

ଧାନ ଧା ଘଡ଼ିକ ଝଦାଝଦି ।

ଗାଁ ମାଇପେ ଗୃହପାଖେ ଘେରି ବସିଛନ୍ତି । ଏତେଦିନର ମାୟାମମତା କାଟି ପରଘରକୁ ଯିବାକୁ ହେବ । ଭାବନାବେଳକୁ ଗ୍ଲାନି ଜଡ଼ିତ ହୋଇଯାଉଛି । ଯେଉଁ ଅପରିଚିତଙ୍କର ହାତ ଧରି ସଂସାର କରିବାକୁ ଯାଉଛି ସେଇ ମୋର ଜୀବନସର୍ବସ୍ୱ । ସ୍ରୋତର ଫୁଲ ପରି ସମୁଦ୍ରର ଢେଉରେ ଭାସି ଭାସି ଯେଉଁ କୂଳରେ ଲାଗିଛି ସେଇଠି ମୋର ସ୍ଥାନ । ସେଇ ମୋର ସଂସାର । ମୋର ଶାଶୁ, ଶ୍ୱଶୁର, ସ୍ୱାମୀ, ଦେବର, ନଣନ୍ଦ ଓ ସେମାନଙ୍କର ଜ୍ଞାତି-କୁଟୁମ୍ବ, ବନ୍ଧୁବାନ୍ଧବ, ଗ୍ରାମବାସୀମାନେ କଅଣ କହିବେ, କପରି ମୋତେ ଗ୍ରହଣ କରିବେ, ସେତିକି ମୋର ଭାବନା । କପରି ସେମାନଙ୍କର ସେବା କରିପାରିବି, ସେମାନଙ୍କୁ ସନ୍ତୁଷ୍ଟ କରିପାରିବି, ସେଇ ଶକ୍ତି ମନରେ ଦେବାକୁ ଭଗବାନଙ୍କ ନିକଟରେ ମୋର ଗୁହାରି ।

ବୋଉକୁ ବେଢ଼ି ଗାଁ ମାଇପେ ମନରେ ଈର୍ଷା, ତୁଣ୍ଡରେ ପ୍ରଶଂସା କରି କହୁଛନ୍ତି, କପାଳ ଲୋ ଗୀତାବୋଉ, ରଜାପୁଅ ପରି ରୂପ ଜୋଇଁର, ବଡ଼ଘର, ଜୋଇଁ କେତେ ପାଠ ପଢ଼ି ହାକମ ହୋଇଛି, ଗୀତାଟି ସୁଖରେ ରହିବ ।

ବଡ଼ମା ମୋର ମୁଣ୍ଡ ଆଉଁସିଦେଲେ । ଆଖିରୁ ଝରି ପଡ଼ୁଥିଲା ଲୁହ । କହିଲେ, ପାଞ୍ଚ ଝିଅ ମୁଁ ଜନମ କରି ନ ଥିଲି ତ, ଛଅ ଝିଅ । ଗୀତାଟି ମୋର କୋଡ଼ପୋଛା । ବେକ ନଙ୍ଗଳା କରି ଶାଶୂ ଆଗରେ ସେ ଠିଆ ହେଲେ ମୋର ନାମ ନିନ୍ଦା ହେବ ।

ବଡ଼ମା ତାଙ୍କ ବେକରୁ ପ୍ରଜାପତିଆ ହାରଟି କାଢ଼ି ମୋ ବେକରେ ଝୁଲାଇ ଦେଲେ ।

କମଳାଭାଇଙ୍କ ସ୍ତ୍ରୀ ନୂଆ ଗଢ଼ାଇଥିବା କାନପାହା ହଳଟି ମୋ କାନରେ ଝୁଲାଇ କାନ୍ଦି କାନ୍ଦି କହିଲେ, ମୋ ଗୀତା ପରି ସବୁସହଣୀ ନଣନ୍ଦଟିଏ ମୁଁ ଆଉ ପାଇବି ନାହିଁ ଲୋ, କାହା ସଙ୍ଗେ ପୁଣି ଗେଲ ଲଗାଇବି ?

ହାତରୁ ହି ହି ପଟି ସୁନା କାଚ ଆଣି ମୋ ହାତରେ ପିନ୍ଧାଇ-ଦେଲେ ଭାଉଜ । ଆଖି ଛଳ ଛଳ କରି କହିଲେ, ସୁନାର ଦେହ, ସୁନାର ମନ ନେଇ ମୋ ନଣନ୍ଦ ଗୀତାର ଜନମ, ଅଳଙ୍କାର ଖାଲି ବାହାରଦେଖାଣ ତକ !

ଗାଁ ମାଇପେ ମୋର ହାତ ହଳଟି ଟାଣି ଆଙ୍ଗୁଠି ଗୁଡ଼ିକରେ ସୁନାମୁଦିମାନ ପିନ୍ଧାଇଦେଲେ । ଚୁହିଁ ରହିଥାଏଁ ବୋଉ ମୁହଁକୁ । ତା ଆଖିରେ ଲୁହ ନାହିଁ । ତୃପ୍ତିରେ ଉଜ୍ଜ୍ୱଳ ଦିଶୁଛି ମୁହଁ ।

ଆଉ ଗୋଟିଏ ମୁହଁ ଦେଖିବାକୁ ମୋର ମନ ବ୍ୟାକୁଳ ହେଲା । ପ୍ରାଣ ଛଟପଟ ହେଲା । ବଞ୍ଚିଥିବାଯାଏ ଦେଖିପାରିବି ନାହିଁ ତାଙ୍କର ସେ ହସିଲା ମୁହଁ । ପ୍ରାଣରୁ ବଳି ଭଲ ପାଉଥିଲେ । ଶେଷବେଳରେ ମୁହଁରେ ଟିକେ ପାଣି ଦେଇ ପାରିଲି ନାହିଁ ।

ଆମ୍ଭା ବଲପି ଉଠିଲା, ବାପା, ବାପା—

ଛାତି ପଥର କଲି, ଥରିଲା ଓଠ ଚାପି ଧରିଲି । ଶବଦଟି ତୁଣ୍ଡରୁ ଖସିଲେ ବୋଉ ମୋର ଭାଙ୍ଗି ପଡ଼ିବ ।

ମନର କୋହକୁ ଅଟକାଇ ପାରିଲି ସିନା, ଆଖିର ଲୁହ ତ ଅଟକାଇ ପାରିଲି ନାହିଁ ।

## —ଛୟାଅଶୀ—

ଅମରଭାଇ ଓ ତାଙ୍କ ପଛରେ ଦୁଇଜଣ ଅପରିଚିତା ସ୍ତ୍ରୀ-ଲୋକ ମୋ ଥିବା ଘରେ ପଶିଲେ ।

ଅମୁଭାଇ ବୋଉକୁ ଓଳଗି ହେଲେ । କହିଲେ, ପ୍ରବୋଧ-ବାବୁଙ୍କ ବୋଉ ଆସିଛନ୍ତି ଅପା, ସେ ହେଉଛନ୍ତି ତାଙ୍କ ଖୁଡ଼ୀ । ପ୍ରବୋଧବାବୁ ଦାଣ୍ଡରେ କାର୍‌ରେ ବସିଛନ୍ତି । ଭଡ଼ା ଗାଡ଼ିଟା, ଡ୍ରାଇଭର ବ୍ୟସ୍ତ ହେଉଛି । ସେଉଁ କଦର୍ଯ୍ୟ ରସ୍ତା ! ମୁଁ ମନା କରୁଥିଲି, ପ୍ରବୋଧବାବୁ ତମକୁ ଦେଖିବାକୁ ଆସିବେ ବୋଲି ଜିଗର ଧରିଲେ ।

ବୋଉ ଉଠି ପ୍ରବୋଧବାବୁଙ୍କ ମାଆଙ୍କର ହାତ ଧରିଲା । ତାଙ୍କର ଗମ୍ଭୀର ସଜଳ ମୁହଁକୁ ଚାହିଁ ମୁଁ ମୁଣ୍ଡ ନୋଇଁଲି ।

ସେ ମୋ ପାଖରେ ବସିଲେ । ମୋର ଚିବୁକରେ ହାତ ଦେଇ ଗେହ୍ଲେଇ କହିଲେ, ତୋର ମାଉସୀଶାଶୂ ମୁଁ, ମାଧବ ପରା ମୋର ଅପାଙ୍କର ବଡ଼ ପୁଅ । ପ୍ରବୋଧଠାରୁ ସାତମାସ ବଡ଼ ।

ନଜ ବେକରୁ ପଥରବସା ଓଜନିଆ ସୁନାହାରଟିଏ କାଢ଼ି ମୋ ବେକରେ ଲମ୍ବାଇଦେଲେ । ମୋ ମୁହଁଟିକୁ ଚେକ ଦେଖିଲେ । ମୁଁ ଆଖି ବୁଜଥାଏଁ । କହଲେ, ଦେଖ ଲେ ମୋର ବଡ଼ ବୋହୂର ମୁହଁ, ସାକ୍ଷାତ ଲକ୍ଷ୍ମୀଠାକୁରାଣୀଙ୍କ ମୁହଁ ପର ଦଶୁନାହିଁ କ ?

ବୁଝିଲ, ସେ ତାଙ୍କ ଜାଆଙ୍କୁ ଶୁଣାଇ କହୁଥିଲେ ।

ଅମୂଲ୍ୟଭାଇ କହଲେ, ପ୍ରବୋଧବାବୁ ଏକା ବସିଛନ୍ତି, ମୁଁ ଯାଉଛି ।

ରେଣୁ ଧାଇଁଆସି କହଲ, କଟକରୁ କଏ ଗାଡ଼ରେ ଆସିଛନ୍ତି ଯେ ଆମ ନୂଆ ବୋଉଙ୍କ ହାତ ଧରି ଦାମଭାଇଙ୍କ ସଙ୍ଗେ ଗାଁ ବୁଲବାକୁ ଗଲେଣି ।

ଗୋଡ଼ର ବୁଢ଼ାଅଙ୍ଗ ଠିକୁ ଗୁହାଁଲ । ଷଡ କେବଠୁଁ ଭଲ ହୋଇଗଲଣି । ବାଗଟା ଏକାଥରେ ଜାତ ନାହିଁ ।

କଟକ
୧୯୪୦

—※—

ଶ୍ରୀ ରାଧାନାଥ କୋ-ଅପରେଟିଭ ପ୍ରେସ, କଟକ-୨—୧୯୬୩